ବିକଳ୍ପ ରାଜ୍ୟ ଜଳନୀତି

ପ୍ରକାଶନ କାଳ: ୩ ମାର୍ଚ୍ଚ, ୨୦୦୫

ପ୍ରକାଶକ :
ଅଗ୍ରଗାମୀ
କାଶୀପୁର - ୭୬୫୦୧୫
ରାୟଗଡ଼ା, ଓଡ଼ିଶା

ସହାୟତା :
ଅକ୍ସଫାମ୍
ଭୁବନେଶ୍ୱର

ମୁଦ୍ରଣ :
ଶିକ୍ଷା ପ୍ରକାଶନୀ
ଭୁବନେଶ୍ୱର

ମୂଲ୍ୟ : ଟ.୨୦/-

ALTERNATIVE
STATE WATER POLICY

*Published on* :
3rd March 2005

*Published by* :
**Agragamee**
Kashipur 765 015
Rayagada, Orissa

*Sponsored by* :
**OXFAM**
Bhubaneswar

*Printed at* :
**Siksha Prakashani**
Bhubaneswar

Price : Rs.20/- (Rupees Twenty only)

# ମୁଖବନ୍ଧ

"ବିକଳ୍ପ ଜଳନୀତି" ପ୍ରକାଶ କରିବା ପାଇଁ ଅଗ୍ରଗାମୀ କେତେ ଦିନଠାରୁ ଉଦ୍ୟମ କରିଆସୁଛି । ୨୦୦୦ ମସିହାରେ ଦେଶର କେତେକ ସୁନାମଧନ୍ୟ ସ୍ୱେଚ୍ଛାସେବୀ ସଙ୍ଗଠନର ମୁଖ୍ୟମାନେ ଏକାଠି ହୋଇ ପ୍ରସ୍ତାବିତ ରାଷ୍ଟ୍ରୀୟ ଜଳନୀତି ଉପରେ ଆଲୋଚନା ଓ ପର୍ଯ୍ୟାଲୋଚନା କରିଥିଲେ । ଏଭଳି ଏକ ଆଲୋଚନା ନିତାନ୍ତ ଆବଶ୍ୟକ ଥିଲା, କାରଣ ଅନେକଙ୍କ ସନ୍ଦେହ ଥିଲା ଯେ ରାଷ୍ଟ୍ରୀୟ ଜଳନୀତିରେ ଗରିବଙ୍କ ସ୍ୱାର୍ଥପ୍ରତି ଯଥେଷ୍ଟ ଧ୍ୟାନ ଦିଆଯାଇନାହିଁ ଓ ଘରୋଇକରଣ ଉପରେ ପ୍ରାଧାନ୍ୟ ଦିଆଯାଇଛି । ଅନେକଙ୍କ ପ୍ରଶ୍ନ ଥିଲା ଯେ "ରାଷ୍ଟ୍ରୀୟ ଜଳନୀତି" ପଛରେ ବିଶ୍ୱବ୍ୟାଙ୍କ ଭଳି ସଙ୍ଗଠନଙ୍କ ପ୍ରଭାବ ରହିଛିକି ? ଏହି ଆଲୋଚନାରେ ମୁଖ୍ୟ ଭୂମିକା ନେଇଥିଲେ ସ୍ୱର୍ଗତ ଶ୍ରୀ ବିଳାସ ଭାଇ ସାଲୁଙ୍କେ (ପାଣି ପଞ୍ଚାୟତର), ଶ୍ରୀ ରାଜେନ୍ଦ୍ର ସିଂ (ମ୍ୟାଗସେସ ପୁରସ୍କାର ପ୍ରାପ୍ତ), ଶ୍ରୀମତୀ ବନ୍ଦନା ଶିବା (ପରିବେଶବିତ୍), ଶ୍ରୀ ଅନୁପମ ମିଶ୍ର (ଗାନ୍ଧିଶାନ୍ତି ପ୍ରତିଷ୍ଠାନ) । ମୋତେ ମଧ୍ୟ ଏ ଆଲୋଚନାରେ ଭାଗ ନେବାକୁ ସୁଯୋଗ ମିଳିଥିଲା ।

ପ୍ରସ୍ତାବିତ ରାଷ୍ଟ୍ରୀୟ ଜଳନୀତିର ପ୍ରତ୍ୟେକ ଧାରା ଓ ଉପଧାରା ଗୁଡ଼ିକୁ ତର୍ଜମା କରିବାକୁ ଯଥେଷ୍ଟ ସମୟ ମିଳିଥିଲା ଆମ ସମସ୍ତଙ୍କୁ । ରାଷ୍ଟ୍ରୀୟ ଜଳନୀତିର ଇତିହାସ ସହ ପରିଚିତ ହେବାକୁ ପଡ଼ିଥିଲା । ବ୍ୟବହାର ହୋଇଥିବା ପ୍ରତ୍ୟେକ ଶବ୍ଦ ଓ ବାକ୍ୟଗୁଡ଼ିକର ଅର୍ଥ ବୁଝିବାକୁ ଆମକୁ କିଛିଟା କସରତ ମଧ୍ୟ କରିବାକୁ ହୋଇଥିଲା । ଶେଷରେ ଜଣାପଡ଼ିଲା ଯେ ପ୍ରସ୍ତାବିତ ଜଳନୀତିରେ ଯଦିଓ ପାନୀୟ ଜଳ ଓ ଗରିବଙ୍କ ଜଳନିରାପତ୍ତା ଉପରେ ପ୍ରଧାନ୍ୟ ଦେବା ପାଇଁ ଉଦ୍ୟମ କରାଯାଇଥିଲା, କିନ୍ତୁ ପ୍ରଚ୍ଛନ୍ନ ଭାବେ ଗରିବ ବିରୋଧି ପ୍ରସ୍ତାବଗୁଡ଼ିକ ମଧ୍ୟ ରଖାଯାଇଥିଲା । ସାଧାରଣ ଜନସାଧାରଣ ବିଶେଷ ରୂପେ ଗରିବମାନଙ୍କୁ କେନ୍ଦ୍ରବିନ୍ଦୁ କରି ଆମେ ସମସ୍ତେ ନାଗରିକ ସମାଜ ହିସାବରେ ଏକ ବିକଳ୍ପ ରାଷ୍ଟ୍ରୀୟ ଜଳନୀତିର ପରିକଳ୍ପନା କରିଥିଲୁ ଓ ତାହା ଯୋଜନା କମିଶନ ଜରିଆରେ ଜଳସମ୍ପଦ ମନ୍ତ୍ରଣାଳୟକୁ ପଠାଇଥିଲୁ । ମାତ୍ର ୨୦୦୨ ମସିହାରେ ଯେତେବେଳେ ରାଷ୍ଟ୍ରୀୟ ଜଳନୀତି ଉଦ୍‌ଘୋଷିତ ହେଲା, ସେଥିରେ ଆମର ପ୍ରସ୍ତାବିତ କୌଣସି ଶବ୍ଦ, ବାକ୍ୟ ବା ମତାମତ ସ୍ଥାନ ପାଇନଥିଲା । ଏଥିରେ ଆମେ ବିଚଳିତ ହୋଇଥିଲୁ ସତ କିନ୍ତୁ ଆଶ୍ଚର୍ଯ୍ୟ ହୋଇନଥିଲୁ । ଭାରତ ଭଳି ସ୍ୱାଧୀନ ଦେଶର ଜଳସମ୍ପଦକୁ କେମିତି ଉତ୍ତମ ପରିଚାଳନାର ଦୁହାଇ ଦେଇ ନଷ୍ଟ କରାଯାଉଛି ତାହା ବାହାର ଶକ୍ତିଙ୍କ ଚାପ ବୋଲି ଅନୁଭବ କରି ହେଉଥିଲା । ଏହି ଦେଶ ଏବଂ ଜନବିରୋଧି ଶକ୍ତିର ମୁଖା ଖୋଲି ଦେବା ସମସ୍ତଙ୍କର କର୍ତ୍ତବ୍ୟ ବୋଲି ଦୃଢ଼ ଧାରଣା ହୋଇଥିଲା ।

ନାଗରିକ ସମାଜ ଭିତରୁ ଆମେ ଯେଉଁମାନେ ବିକଳ୍ପ ରାଷ୍ଟ୍ରୀୟ ଜଳନୀତିର ପରିକଳ୍ପନା କରିଥିଲୁ ସାମଗ୍ରିକ ଭାବେ ମନସ୍ଥ କରିଥିଲୁ ଯେ ଏହି ବିକଳ୍ପ ନୀତି ଜନସାଧାରଣଙ୍କ ପାଖରେ ଯେମିତି ପହଞ୍ଚିବ ଓ ଗାଆଁ ଠାରୁ ଆରମ୍ଭ କରି ସହର ପର୍ଯ୍ୟନ୍ତ ଓ ଗରିବ ଠାରୁ ଆରମ୍ଭ କରି ଧନୀ ପର୍ଯ୍ୟନ୍ତ ସାରା ଦେଶରେ ଏକ ବ୍ୟାପକ ତର୍କ ଆରମ୍ଭ ହେବ ।

ରାଷ୍ଟ୍ରୀୟ ଜଳନୀତି ୨୦୦୨ ମସିହାରେ ସରକାରଙ୍କ ଦ୍ୱାରା ଘୋଷଣା କରାଗଲା । ଏହାକୁ ଦେଖି ଓଡ଼ିଶା ସରକାର ୨୦୦୩ରେ ଏକ ରାଜ୍ୟସ୍ତରୀୟ ନୂତନ ଜଳନୀତି ମଧ୍ୟ ପ୍ରସ୍ତୁତ କରିଲେ । ଦୁଇ ସ୍ତରର ଜଳନୀତିରେ ବିଶେଷ ପାର୍ଥକ୍ୟ ନଥିଲା । ଏସବୁକୁ ବିଚାରକୁ ନେଇ, ଅଗ୍ରଗାମୀ "ବିକଳ୍ପ ଜଳନୀତି" ପାଇଁ ପଦକ୍ଷେପ ନେଇଥିଲା ।

ପ୍ରଥମେ ଓଡ଼ିଶାର ବିଶିଷ୍ଟ ବିଶାରଦ ଓ ନାଗରିକ ସମାଜର କର୍ମକର୍ତ୍ତାମାନଙ୍କୁ ନେଇ ଏକ ସକ୍ରିୟ ଗୋଷ୍ଠୀ ଗଠନ କରାଗଲା । ଆଲୋଚନା, ଗବେଷଣା, ଅନୁଭୂତିକୁ ପୁଞ୍ଜିକରି ରାଷ୍ଟ୍ରୀୟ ଜଳନୀତି ଓ ରାଜ୍ୟସ୍ତରୀୟ ଜଳନୀତିର ବିଶଦ ବାଖ୍ୟା କରାଗଲା । ତା'ପରେ ସାଧାରଣ ଗରିବ ମଣିଷଙ୍କ ସ୍ୱାର୍ଥକୁ କେନ୍ଦ୍ରବିନ୍ଦୁ କରି ଏକ "ବିକଳ୍ପ ଜଳନୀତି" ନାମରେ ଦଲିଲ୍ ପ୍ରସ୍ତୁତ କରାଗଲା । ତୃତୀୟରେ ଏହାକୁ ଓଡ଼ିଶାର ଜନସାଧାରଣଙ୍କ ପାଖରେ ଉପସ୍ଥାପନା କରାଯିବାକୁ ପଦକ୍ଷେପ ନିଆଗଲା । ଜଳର ରାଜନୀତି (Political Economy)କୁ ବିଶ୍ଳେଷଣ କରିବାକୁ କ୍ଷେତ୍ର ପ୍ରସ୍ତୁତ କରାଗଲା ।

"ବିକଳ୍ପ ଜଳନୀତି" ସମାଜର ସବୁଶ୍ରେଣୀଙ୍କୁ ପ୍ରଭାବିତ କରିଲା ଭଳି ପରିକଳ୍ପନା କରାଯାଇଛି । ଏହା ପଠନଯୋଗ୍ୟ ହେବ ବୋଲି ମଧ୍ୟ ଧ୍ୟାନ ଦିଆଯାଇଛି । ଏହାର ଏକ ସାରାଂଶ ପୁସ୍ତିକା ଆକାରରେ ମଧ୍ୟ ପ୍ରକାଶିତ ହେବ ବୋଲି ଯୋଜନା ଚାଲିଛି । ଅଗ୍ରଗାମୀ ଦ୍ୱାରା ପ୍ରକାଶିତ "ସମସ୍ତଙ୍କ ପାଇଁ ପାଣି" ନାମକ ଏକ ପତ୍ରିକାରେ "ବିକଳ୍ପ ଜଳନୀତି"ର ଝଲକ ମଧ୍ୟ ପର୍ଯ୍ୟାୟ କ୍ରମେ ଦିଆଯାଉଛି ।

"ବିକଳ୍ପ ଜଳନୀତି" ପ୍ରସ୍ତୁତି ପ୍ରକ୍ରିୟାରେ ଅନେକ ବୁଦ୍ଧିଜିବୀ ଓ ବିଶାରଦମାନେ ସାହାଯ୍ୟ କରିଛନ୍ତି । ବିଶେଷ ଭାବେ ଇଂଜିନିୟର ଶ୍ରୀ ବନମାଳୀ ନାୟକ, ଶ୍ରୀ ଏସ୍.ଏମ୍. ପଟ୍ଟନାୟକ ଓ ପ୍ରଫେସର ଶ୍ରୀ ନବକିଶୋର ମହାଳିକ, କୃଷି ବିଶାରଦ ଶ୍ରୀ ଶମ୍ଭୁ ମହାପାତ୍ର ଆଦି ବିଶିଷ୍ଟ ବ୍ୟକ୍ତିଙ୍କ ସ୍ୱତନ୍ତ୍ର ଅବଦାନ ରହିଛି । ସେମାନଙ୍କୁ ଯଥେଷ୍ଟ ଧନ୍ୟବାଦ ।

ଅଚ୍ୟୁତ ଦାସ
୧.୧.୨୦୦୫

# ବିକଳ୍ପ ରାଜ୍ୟ ଜଳନୀତି

## ୧.  ଓଡ଼ିଶା ପାଇଁ ବିକଳ୍ପ ଜଳନୀତିର ଆବଶ୍ୟକତା :

**୧.୧. ଜଳ ଏକ ଅତ୍ୟାବଶ୍ୟକ ସମ୍ପଦ । ପ୍ରାଣୀ ମାତ୍ରେ ଜୀବନଧାରଣ ପାଇଁ ଏହା ଅତି ଗୁରୁତ୍ୱପୂର୍ଣ୍ଣ, ତେଣୁ ଏହା ଏକ ମୂଲ୍ୟବାନ ସମ୍ପଦ । ଏହି ଦୃଷ୍ଟିରୁ ଜଳ ସମ୍ପଦର ରକ୍ଷଣାବେକ୍ଷଣ ଓ ପରିଚାଳନା କେବଳ ରାଜ୍ୟ ନୁହେଁ, ସ୍ଥାନୀୟ ଲୋକମାନଙ୍କର ଆବଶ୍ୟକତା ଅନୁଯାୟୀ ହେବା ଉଚିତ ।**

ସ୍ପଷ୍ଟୀକରଣ :

କ)  ବିକାଶ ପରିଯୋଜନା ପରିପ୍ରେକ୍ଷୀରେ ରାଜ୍ୟବାସୀଙ୍କୁ ନିମ୍ନମତେ ତିନିଭାଗରେ ବିଭକ୍ତ କରାଯାଇପାରେ -

୧)  ବିକାଶ ପରିଯୋଜନା କାର୍ଯ୍ୟକାରୀ ହେବାଦ୍ୱାରା ଯେଉଁମାନେ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବେ କ୍ଷତିଗ୍ରସ୍ତ ହେଉଥାନ୍ତି,

୨)  ଯେଉଁମାନେ ଏହା ଦ୍ୱାରା ସିଧାସଳଖ ଉପକୃତ ହେଉଥାନ୍ତି,

୩)  ଯେଉଁମାନେ ପରୋକ୍ଷ ଭାବରେ ଉପକୃତ ହେଉଥାନ୍ତି,

ଏହିସବୁ ଆଖି ଆଗରେ ରଖି ପ୍ରଥମ (୧) ବିଭାଗର ଲୋକମାନଙ୍କର ସମସ୍ୟାକୁ ବିଶେଷ କରି ବିଚାରକୁ ନେବା ଉଚିତ, କାରଣ ସେମାନଙ୍କ ତ୍ୟାଗ ବଳରେ ରାଜ୍ୟ ସମୃଦ୍ଧ ହୁଏ । ଯଦି ତାହା ନ ହୁଏ, ଏହା ସ୍ଥାନୀୟ ବାସିନ୍ଦାମାନଙ୍କ ପାଇଁ ଅନ୍ୟାୟ ହେବ ଏବଂ ସେମାନଙ୍କ ସମସ୍ୟାର ସମାଧାନ ସମ୍ଭବ ନୁହେଁ ।

ଖ)  ଜଳସମ୍ପଦକୁ ପଣ୍ୟବସ୍ତୁ ବୋଲି ବୁଝିବା ଠିକ୍ ହେବନାହିଁ । ପବନ ଓ ସୂର୍ଯ୍ୟାଲୋକ ଭଳି ଏହା ଏକ ପ୍ରାକୃତିକ ବିଭବ ଏବଂ ଏହାଉପରେ ସମସ୍ତଙ୍କର ସମାନ ଅଧିକାର ରହିଛି ।

**୧.୨. ପାଣି ଜୀବନ ପାଇଁ (ମାନବ ଓ ଅନ୍ୟାନ୍ୟ ଜୀବନ ସତ୍ତା) ଅତ୍ୟାବଶ୍ୟକ ଅଟେ । ଖାଦ୍ୟ, ସୁରକ୍ଷା, ଘରୋଇ ବ୍ୟବହାର, ଶିଳ୍ପ ବିକାଶ ଓ ପର୍ଯ୍ୟାବରଣ ବଞ୍ଚିରହିବା ପାଇଁ ଏହା ଅପରିହାର୍ଯ୍ୟ ଅଟେ ।**

ସ୍ପଷ୍ଟୀକରଣ:

ଯେତେବେଳେ ବିକାଶମୂଳକ ଯୋଜନା ବିଷୟରେ ଚିନ୍ତା କରାଯାଏ, ସାଧାରଣତଃ ମୁଖ୍ୟ ବିଷୟଟିକୁ ପ୍ରାଧାନ୍ୟ ଦିଆଯାଇ ଅନ୍ୟାନ୍ୟ ଆନୁଷଙ୍ଗିକ ଦିଗଗୁଡିକୁ ଅବହେଳା କରାଯାଇଥାଏ ଓ ବିଶେଷ ନଜର ଦିଆଯାଇନଥାଏ । ପ୍ରତ୍ୟେକ ଦିଗକୁ ସମାନ ଭାବରେ ତର୍ଜମା କରାଗଲେ ସମସ୍ତଙ୍କ ପାଇଁ ଏହା କିଛି ନା କିଛି ଉପଯୋଗୀ ହେବ ।

**୧.୩. ଜଳ ନବୀକରଣଯୋଗ୍ୟ ହେଲେ ହେଁ ଏହା ଏକ ସୀମିତ ସମ୍ପଦ ଅଟେ । ବିକାଶ ପ୍ରକ୍ରିୟା ଏବଂ ଅର୍ଥନୈତିକ କାର୍ଯ୍ୟକଳାପର ସମ୍ପ୍ରସାରଣର ଅବିରତ ଚାପ ହେତୁ ତାହା ସ୍ୱତଃପ୍ରବୃତ୍ତ ବହୁବିଧ ଆବଶ୍ୟକତା ପାଇଁ ଜଳର କ୍ରମବର୍ଦ୍ଧିଷ୍ଣୁ ଚାହିଦା ସୃଷ୍ଟି କରିଛି । ଏହି ଦୁର୍ଲଭ ସମ୍ପଦର ପରିଚାଳନା, ସୁରକ୍ଷା, ସଂରକ୍ଷଣ, ବିକାଶ ଓ ସମୃଦ୍ଧି ପାଇଁ ଯୋଜନା ଏପରି ହେବା ଆବଶ୍ୟକ, ଯାହା ପ୍ରତ୍ୟେକ ପ୍ରତ୍ୟେକଙ୍କର ପରିପୂରକ ହେବେ ଓ ପରିବେଶ -ରକ୍ଷାକାରୀ ହେବେ । ଏହି କାର୍ଯ୍ୟପନ୍ଥା ସ୍ଥାନୀୟ ବାସିନ୍ଦା ଓ ରାଜ୍ୟର ସାମାଜିକ, ଅର୍ଥନୈତିକ ବ୍ୟବସ୍ଥା ସମ୍ବନ୍ଧରେ ମଧ୍ୟ ସଚେତନ ରହିବା ଆବଶ୍ୟକ ।**

**ସ୍ପଷ୍ଟୀକରଣ :**

ଯେତେବେଳେ କୌଣସି ଏକ ବିକାଶ ପ୍ରସ୍ତାବ ପ୍ରଣୟନ କରାଯାଏ, ଏହାର ଉପାଦେୟତା ବିନିଯୋଗ କରାଯିବାର ଦାୟିତ୍ୱ ଏବଂ ଏଥିରୁ ରାଜ୍ୟକୁ ମିଳୁଥିବା ଉଦ୍‌ବୃତ୍ତ ସମ୍ପଦର ବୁଝାମଣା କରିବା କାର୍ଯ୍ୟ ସମ୍ପୂର୍ଣ୍ଣଭାବେ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ଦିଆଯାଇଥାଏ । ଅନ୍ୟପକ୍ଷରେ ଏହି ବିକାଶ ପ୍ରସ୍ତାବଟି ଲାଭଦାୟୀ ହେବାସକାଶେ ଆଉ ଏକ ଗୋଷ୍ଠୀ ସେମାନଙ୍କ ସ୍ୱାର୍ଥତ୍ୟାଗ କରିଥାନ୍ତି । ଏମାନେ ସାଧାରଣତଃ ଠିକ୍ ଭାବରେ କ୍ଷତିପୂରଣ ପାଇ ନଥାନ୍ତି । ବିକାଶ ଦାୟିତ୍ୱରେ ଥିବା କର୍ତ୍ତୃପକ୍ଷ ସେମାନଙ୍କର ଦାବୀକୁ ବିକାଶ ପାଇଁ ପ୍ରତିବନ୍ଧକ ଓ ଅନାବଶ୍ୟକ ଖର୍ଚ୍ଚ ହିସାବରେ ଚିନ୍ତା କରିଥାନ୍ତି । ଏହି ନିଷ୍ପେସିତ ଗୋଷ୍ଠୀର ଆବଶ୍ୟକତାକୁ ବେଶୀ ଗୁରୁତ୍ୱ ଦିଆଯାଏ ନାହିଁ । ଏପରି ହେବା ଉଚିତ ନୁହେଁ । ତେଣୁ ବିକାଶ ନୀତି ସବୁବେଳେ ଏହି ପ୍ରଭାବିତ ଗୋଷ୍ଠୀକୁ ସର୍ବାଧିକାର ଦେବା ଉଚିତ ।

**୧.୪.** ଓଡ଼ିଶା ଏକ କୃଷିପ୍ରଧାନ ରାଜ୍ୟ । ଏହାର ଭୌଗୋଳିକ କ୍ଷେତ୍ରଫଳ ହେଉଛି ୧,୫୫,୭୦୭ ବର୍ଗ କି.ମି. । ଏହାର ଏଗାରଟି ମୁଖ୍ୟ ଅବବାହିକା ଅଛି । ମୌସୁମୀ ବର୍ଷା ଯୋଗୁଁ ହିଁ ନଦୀରେ ମୁଖ୍ୟ ପ୍ରବାହ ରହେ । ରାଜ୍ୟରେ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ଯୋଗୁଁ ବାର୍ଷିକ ହାରାହାରି ୧୪୮୨ ମି.ମି. ବର୍ଷା ହୁଏ । ସ୍ଥଳ ଭାଗରେ ଉପଲବ୍ଧ ପାଣି ୮୫୦୦ କୋଟି ଘନମିଟର; ଏଥିରେ ୧୫୪୨ କୋଟି ଘନମିଟର ପାଣି ଛତିଶଗଡ଼ରୁ ମହାନଦୀରେ ଆସେ ଯାହାକି ଜଳମାପକ କେନ୍ଦ୍ର ଗୁଡିକର ରେକର୍ଡରୁ ଜଣାପଡେ । ଏହି ନଦୀ ଅବବାହିକା ଗୁଡିକ ଅନେକ ଉପ ଅବବାହିକା, ଜଳ ଗ୍ରହଣ କ୍ଷେତ୍ର, ଉପଜଳ ଗ୍ରହଣକ୍ଷେତ୍ର, ଜଳଛାୟା, ଉପଜଳଛାୟା, କ୍ଷୁଦ୍ର ଜଳ ଛାୟା ଓ ଅନ୍ନ ଜଳଛାୟାରେ ବିଭାଜିତ ଯାହାକି ସେଇ ଅଞ୍ଚଳରେ ସ୍ଥାନୀୟ କୌଶଳରେ ନିର୍ମିତ ପୋଖରୀ, ମୁଣ୍ଡା, କଟା ଇତ୍ୟାଦି ସହାୟତାରେ ସ୍ଥାନୀୟ ଫସଲକୁ ଜଳ ଯୋଗାଇବା ପରେ ନଦୀମାନଙ୍କରେ ପ୍ରବାହ ସୃଷ୍ଟି କରେ । କେତେ ପାଣି ଏଭଳି ଭାବେ ନଦୀଗୁଡିକରେ ବୋହିଯାଇଥାଏ, ତାହାର ଏକ ପରିମାପକ ରହିବା ଦରକାର ଯାହାକି ସ୍ଥାନୀୟ ଜଳସେଚନ ପ୍ରକଳ୍ପ କାର୍ଯ୍ୟକାରୀ କରିବା ଲାଗି ସହାୟକ ହେବ । ଓଡ଼ିଶାରେ ୨୦୧ କୋଟି ଘନମିଟର ଭୂତଳ ପାଣି ବ୍ୟବହୃତ ହୁଏ । ବାକି କେତେ ପାଣିର ସମ୍ଭାବନା ଅଛି, ତାହାର ହିସାବ ରହିବା ଦରକାର । ଓଡ଼ିଶାରେ ସବୁ ସମୟରେ, ସବୁ ସ୍ଥାନରେ ଆବଶ୍ୟକତା ମୁତାବକ ଜଳ ମିଳେ ନାହିଁ ।

**ସ୍ପଷ୍ଟୀକରଣ:**

ନଦୀରେ ଜଳମାପ ଅନୁସାରେ ୮୫୧୪ କୋଟି ଘନମିଟର ଜଳ ପ୍ରବାହିତ ହୁଏ ବୋଲି ଅଟକଳ କରାଯାଇଛି । ବୃହତ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ଗୁଡିକର ବିକାଶ ପାଇଁ ଏହି ମାପ କରାଯାଇଥାଏ । ସଫା କରାଯାଉଥିବା ସ୍ଥାନର ଉପର ଅଞ୍ଚଳରେ କେତେ ବର୍ଷା ହୁଏ ଏବଂ ସେସବୁ କେଉଁଠାରେ କେତେ ପାଣି ବ୍ୟବହୃତ ହୁଏ ଏହାର ହିସାବ ଏ ମାପଦ୍ୱାରା ଜଣା ପଡ଼େନାହିଁ । ବର୍ଷା ପାଣି ଦ୍ୱାରା ହେଉଥିବା ଫସଲ, ମପାଯାଉଥିବା ଜାଗାର ଉପରେ ଥିବାରୁ ଏହି ଫସଲକୁ ରକ୍ଷା କରିବା ଲାଗି ହେଉଥିବା ବିକାଶ ପ୍ରକ୍ରିୟା ଆମର ଜଳନୀତିର ପରିସର ମଧ୍ୟକୁ ଆସେନାହିଁ ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ ବୃହତ ଓ ମଧ୍ୟମ ଜଳ ପ୍ରକଳ୍ପ ଗୁଡିକ ବର୍ଷା-ପୁଷ୍ଟ ଫସଲର ବର୍ଷାଭାବ ଜନିତ ଆବଶ୍ୟକତାକୁ ପୂରଣ କରିଥାନ୍ତି । କିନ୍ତୁ ପ୍ରକୃତରେ ସେଚାଞ୍ଚଳର ଆୟତନ ସମୁଦାୟ ଚାଷ ତୁଳନାରେ ବହୁତ କମ୍ । ଅଣ ଜଳସେଚିତ ଅଞ୍ଚଳର ଆବଶ୍ୟକତା ପୂରଣ କରିବା ଏପ୍ରକାର ପ୍ରକଳ୍ପ ମାଧ୍ୟମରେ ସମ୍ଭବପର ହୋଇ ପାରୁଥିବାରୁ, ସେପରି ଅଞ୍ଚଳ ପାଇଁ ଏକ ବିକଳ୍ପ ଚିନ୍ତା ହେବା ଆବଶ୍ୟକ ଅନେକ ଦିନରୁ ଲୋକେ ନିଜ ପ୍ରଚେଷ୍ଟାରେ ଛୋଟଛୋଟ ପ୍ରକଳ୍ପମାନ କରିଆସୁଥିଲେ । ସେମାନଙ୍କୁ ଜଳଛାୟା ମାଧ୍ୟମରେ ସାହାଯ୍ୟ ଯୋଗାଇ ଦେବାର ସମୟ ଆସିଛି । ଏପରି ବ୍ୟବସ୍ଥା ହେଲେ ଜଳଯୋଗାଣ କ୍ଷମତା ବର୍ତ୍ତମାନ ଠାରୁ ଆହୁରି ଅନେକ ଅଧିକ ହୋଇପାରିବ । ବର୍ଷାଦିନେ ମାଟି ଭିତରକୁ ପଶୁଥିବା ବର୍ଷାପାଣିରୁ ଅନେକାଂଶ ସମୟକ୍ରମେ ନଦୀ ଧାରକୁ ବୋହିଯାଏ । ଏହାର ପରିମାଣ ମାଟି ଭିତରକୁ ପଶୁଥିବା

ଜଳ ଅପେକ୍ଷା ଯଥେଷ୍ଟ ଅଧିକ ତେଣୁ ଏହାର ଏକ ମୂଲ୍ୟାଙ୍କନ ହେବା ଉଚିତ । ଏଭଳି ବିଶଦ ମୂଲ୍ୟାଙ୍କନ ହେଲେ ବହୁ ସଂଖ୍ୟାରେ ଅଣୁ ପ୍ରକଳ୍ପ ଗୁଡିକ କାର୍ଯ୍ୟକାରୀ ହୋଇପାରନ୍ତା, କିନ୍ତୁ ଏହା ବର୍ତ୍ତମାନର ଜଳନୀତି ପରିସରଭୁକ୍ତ ହୋଇନାହିଁ ।

**୧.୫ ଜଳ ଏକ ସମ୍ବେଦନଶୀଳ ସମ୍ପଦ । ବନ୍ୟା, ମରୁଡି ଓ ବାତ୍ୟା ଇତ୍ୟାଦି ଜଳଜନିତ ବିଭୀଷିକା ଗୁଡିକ ଜନସାଧାରଣଙ୍କୁ ଅନେକ କ୍ଷତି ପହଞ୍ଚାଇଥାଏ । ଉଚିତ ପଦକ୍ଷେପ ନ ନେଲେ ଏଭଳି ବିଭୀଷିକାକୁ ନିୟନ୍ତ୍ରଣ କରିବା ସହଜ ନୁହେଁ । ଜଳସମ୍ପଦ ଗୁଡିକ ମଣିଷକୃତ ଦୋଷ ଯୋଗୁ ପ୍ରଦୂଷିତ ହୋଇଥାଏ । ଅଶୋଧିତ, ଆଂଶିକ ଶୋଧିତ, ଶିଳ୍ପ ଓ ମ୍ୟୁନିସିପାଲିଟି ମଇଳା ପାଣି ଏହି ସମ୍ପଦକୁ ଆହୁରି ଅସୁରକ୍ଷିତ କରିପକାଏ । ତେଣୁ ପିଇବା ପାଣିର ସୁରକ୍ଷା ଜରୁରୀ, ଯାହାକି ନିର୍ଦ୍ଧାରିତ ଓ ଆଇନ ଅନୁଯାୟୀ ବାଧ୍ୟତାମୂଳକ ହେବା ଉଚିତ । ଓଡ଼ିଶାର ପାରମ୍ପରିକ ଜଳସ୍ରୋତ ଗୁଡିକୁ ସାଧାରଣତଃ ପିଇବାପାଣି ସକାଶେ ବ୍ୟବହାର କରାଯାଏ; କିନ୍ତୁ ସେଗୁଡିକ ଦିନକୁ ଦିନ ପ୍ରଦୂଷିତ ହେବାରେ ଲାଗିଛି ।**

ସ୍ପଷ୍ଟୀକରଣ :

**୧.୬. ଓଡ଼ିଶାରେ ଅନିୟମିତ ମୌସୁମୀ ବର୍ଷା ଯୋଗୁଁ କଳାହାଣ୍ଡି, ବଲାଙ୍ଗୀର, କୋରାପୁଟ ଓ ଅନ୍ୟାନ୍ୟ ଅଞ୍ଚଳରେ ବାରମ୍ବାର ମରୁଡି ହେଉଥାଏ । ବନ୍ୟାର ପ୍ରକୋପ ମଧ୍ୟ ଏଠାରେ କମ୍ ନୁହେଁ । ଜଳ ସଂଗ୍ରହକାରୀ କ୍ଷେତ୍ର ଗୁଡିକରେ ପ୍ରବଳ ବର୍ଷା ହେବା ଫଳରେ ଉପକୂଳବର୍ତ୍ତୀ ଇଲାକା ଗୁଡିକରେ ପ୍ରବଳ ବନ୍ୟା ହୁଏ । ମରୁଡି ଓ ବନ୍ୟା ଭିତରେ ମଧ୍ୟ ଏକ ସମ୍ପର୍କ ରହିଛି, କାରଣ ମରୁଡି ରୋକିବା ଲାଗି ପାଣିର ବ୍ୟବସ୍ଥା ଗୁଡିକ କରାଗଲେ ସେଗୁଡିକ ବର୍ଷାପାଣିର ସୁଅକୁ ରୋକିବେ, ଫଳରେ ନଦୀରେ ବନ୍ୟା ପାଣି କମ୍ ହେବ । ବିଶେଷତଃ ଜଙ୍ଗଲର ଆଚ୍ଛାଦନ ଓ ବର୍ଷାପାଣିର ପ୍ରବାହକୁ ରୋକିବା ଲାଗି ନିଆଯାଇଥିବା ଉପାୟମାନ ପ୍ରତି ଅଣୁ ଜଳଛାୟାରେ କାର୍ଯ୍ୟକାରୀ କରାଯାଉଛି । ଏସବୁ ବ୍ୟବସ୍ଥାମାନ ଅବବାହିକାରେ ପାଣି ମାଟି ଭିତରକୁ ପଶିବାରେ ସହାୟକ ହେବ ଏବଂ ଏସବୁ ସ୍ଥାନରେ ବର୍ଷା ଫସଲକୁ ରକ୍ଷା କରିବ । ଶୀତ ଦିନରେ ନଦୀରେ ପାଣି ଅଧିକ ପ୍ରବାହିତ ହେବ । ବନ୍ୟା ପାଇଁ ଅଧିକ ଜାଗା ତଥା ବର୍ଷା ପାଣି ରୋକିବା ଉପାୟ ସବୁ ଚିହ୍ନିତ ସ୍ଥାନରେ କରାଗଲେ ବନ୍ୟାର ଠିକ୍ ଭାବେ ପ୍ରତିରୋଧ କରାଯାଇପାରିବ ।**

ସ୍ପଷ୍ଟୀକରଣ :

ବନ୍ୟା ଓ ମରୁଡି ଏ ରାଜ୍ୟର ଚିରାଚରିତ ଘଟଣା । ଏ ଦୃଷ୍ଟିରୁ ମରୁଡି ଓ ବନ୍ୟା ମଧ୍ୟରେ ଥିବା ନିବିଡ଼ ସମ୍ପର୍କ ବିଷୟରେ ଅନୁଧ୍ୟାନ ହେବା ଆବଶ୍ୟକ । ମରୁଡି ପ୍ରତିକାର ବ୍ୟବସ୍ଥା ଗୁଡିକୁ କାର୍ଯ୍ୟକାରୀ କରାଗଲେ ବର୍ଷାପାଣିକୁ ଅଣୁ ଜଳଛାୟା ମାଧ୍ୟମରେ ରୋକି ହେବ । ଏହି ବ୍ୟବସ୍ଥା ଗୁଡିକ ହେଲା, ଯଥେଷ୍ଟ ଜଙ୍ଗଲ ସୃଷ୍ଟି ଲାଗି ବୃକ୍ଷରୋପଣ, ମାଟି ଓ ଜଳସଂରକ୍ଷଣ ବ୍ୟବସ୍ଥା, ଜଳ ଅମଳ ବ୍ୟବସ୍ଥା ଏବଂ ବୋହିଯାଉଥିବା ପାଣିର ନିୟନ୍ତ୍ରଣ । ଏସବୁ ପ୍ରାଥମିକ ଜଳଛାୟା ଗୁଡିକରେ କରାଯିବ । ଏହା ଦ୍ୱାରା ଶତକଡା ୫୦ରୁ ୬୦ ଭାଗ ପାଣି ଜଳଛାୟାରେ ସଂରକ୍ଷିତ କରି ରଖାଯାଇପାରେ । ଏହା ଦ୍ୱାରା ବଡ଼ ବଡ଼ ନଦୀମାନଙ୍କରେ ବନ୍ୟା ନିୟନ୍ତ୍ରଣ ହୋଇପାରିବ । କିନ୍ତୁ ରାଜ୍ୟ ଜଳନୀତି ଏହି ବୈଷୟିକ ଜ୍ଞାନ ସମ୍ବନ୍ଧରେ ନୀରବତା ଅବଲମ୍ବନ କରିଛି ।

ଅନ୍ୟପକ୍ଷରେ ସମୁଦ୍ର ପାଖାପାଖି ନଦୀମାନଙ୍କରେ ବନ୍ୟା ନିୟନ୍ତ୍ରଣ ପାଇଁ ବୃହତ୍ ଜଳାଶୟ ଓ ଉଚ୍ଚ ବନ୍ଧବାନ୍ଧିବା ଉପରେ ଜୋର୍ ଦିଆଯାଇଛି ।

ଯଦି ମରୁଡି ନିରାକରଣ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମ ବନ୍ୟା ନିୟନ୍ତ୍ରଣ ପାଇଁ ସହାୟକ ହୁଏ ତାହାହେଲେ ଏହା ଗୋଟାଏ ମୁଦ୍ରାର ଦୁଇ ପାର୍ଶ୍ୱଭଳି ପ୍ରତୀତ ହେବ । ଏ ଦୃଷ୍ଟିରୁ ଜଳନୀତିରେ ପରିବର୍ତ୍ତନ ହେବା ବାଞ୍ଛନୀୟ । ସ୍ଥାନୀୟ ବାସିନ୍ଦା ବନ୍ୟା ଓ ମରୁଡି ପାଇଁ ଏକ ସମନ୍ୱିତ ଆଭିମୁଖ୍ୟ ଦ୍ୱାରା ବେଶୀ ଉପକୃତ ହେବାର ସମ୍ଭାବନା ଥିବାବେଳେ ବର୍ତ୍ତମାନର ଜଳନୀତି କେବେ କାର୍ଯ୍ୟକାରୀ ନ ହୋଇ ପାରିବା ଭଳି ଆଭିମୁଖ୍ୟ ଗ୍ରହଣ କରିଛି ।

୧.୭ ଜଳସମ୍ପଦର ବିକାଶ ପାଇଁ ବହୁତ ଗୁଡିଏ ବିଷୟ ଯଥା ସମ୍ପୃକ୍ତ ଅଞ୍ଚଳର ସାମାଜିକ-ଅର୍ଥନୈତିକ ଦିଗ, ପରିବେଶକୁ ବଞ୍ଚାଇ ରଖିବା ପରି ଇସ୍ୟୁ, ସମୁଚିତ ପୁନର୍ବସନ ଓ ଥଇଥାନ ବ୍ୟବସ୍ଥା (ପ୍ରକଳ୍ପ ଦ୍ୱାରା ଉଚ୍ଛେଦ ଓ ପ୍ରଭାବିତ ହୋଇଥିବା ଲୋକଙ୍କ ପାଇଁ), ତଥା ଜଳଜନିତ ସାଧାରଣ ସ୍ୱାସ୍ଥ୍ୟ ବ୍ୟବସ୍ଥା ଇତ୍ୟାଦି ପ୍ରତି ଦୃଷ୍ଟି ଦେବାକୁ ପଡିବ ।

ନୀତି ନିର୍ଦ୍ଧାରଣ ବେଳେ ଅବ୍ୟବସ୍ଥିତ ଜଳଯୋଗାଣ (ମରୁଡି କିମ୍ବା ପାଣି ଅଧିକ ହୁଏ), ପ୍ରଭାବିତ ଲୋକଙ୍କର ଥଇଥାନ ବ୍ୟବସ୍ଥାରେ ଡେରି, ପ୍ରକଳ୍ପ ଜାଗାରେ ସ୍ଥାନୀୟ ଜଳଉତ୍ସ ଗୁଡିକର ରକ୍ଷଣାବେକ୍ଷଣର ଅବ୍ୟବସ୍ଥା, ଜଳ ସଂରକ୍ଷିତ ହୋଇ ରହିବା ଦ୍ୱାରା ସୃଷ୍ଟିହେଉଥିବା ଅନାବଶ୍ୟକ ଆଦ୍ରତା, ଫସଲ ପର୍ଯ୍ୟାୟର ବ୍ୟତିକ୍ରମ, ନାଳ ପାଣିର ପୁନର୍ବ୍ୟବହାର ଇତ୍ୟାଦି ବିଷୟରେ ମଧ୍ୟବର୍ତ୍ତୀ ଶୃଙ୍ଖଳାଗତ କମିଟି ନିଶ୍ଚିତ ଅନୁଧ୍ୟାନ କରିବେ । ଭୂତଳ ଜଳର ଅତ୍ୟଧିକ ଉପଯୋଗ କେତୋଟି ଜିଲ୍ଲାରେ ଚିନ୍ତାର କାରଣ ହୋଇଛି । ଏସବୁ ଅଞ୍ଚଳରେ ଭୂତଳ ଜଳ ସ୍ତରକୁ ରିଚାର୍ଜ କରିବାକୁ ଯଥାଯୋଗ୍ୟ ପଦକ୍ଷେପ ନିଆଯିବା ଉଚିତ ।

**ସ୍ପଷ୍ଟୀକରଣ :**

ମୁଖ୍ୟ ବିଷୟ ଗୁଡିକ ହେଲା -

- ପରିବେଶ ରକ୍ଷଣାବେକ୍ଷଣ
- ଉପଯୁକ୍ତ ପୁନର୍ବସତି ଓ ଥଇଥାନ
- ସାଧାରଣ ସ୍ୱାସ୍ଥ୍ୟ ସୁରକ୍ଷା
- ସ୍ୱମ୍ଭୟ ଓ ମୂଲ୍ୟର ସଦୁପଯୋଗ
- ଜଳ ଜମି ରହିବା
- ମାଟିର ଅନୁର୍ବରତା
- ଜଳ ବିତରଣରେ ସମାନ ସାମାଜିକ ନ୍ୟାୟ ବ୍ୟବସ୍ଥା
- ଭୂତଳ ଜଳର ସଦୁପଯୋଗ

ଜଳନୀତି ଏହି ସବୁ ସମସ୍ୟା ଗୁଡିକ ପ୍ରତି ଦୃଷ୍ଟି ଦେବା ଉଚିତ ବୋଲି ସୂଚାଇ ଦିଏ । ଆଗରୁ ଜଳସେଚନ ବିଭାଗ ଏସବୁ ସମସ୍ୟାକୁ ଦୃଷ୍ଟି ଦେବାକୁ ଚାହୁଁଥିଲେ ମଧ୍ୟ ସେ ବିଭାଗରେ ପ୍ରକୃତ ବିଷୟ ଜ୍ଞାନ ଥିବା ଲୋକଙ୍କର ଅଭାବ ଥିବା ହେତୁ ତାହା ସେଭଳି ଉଚ୍ଚମାନର ହୋଇପାରିଲାନାହିଁ । ଏଥିପାଇଁ ଜଳସମ୍ପଦ ବିଭାଗର ବୈଷୟିକ ଜ୍ଞାନକୌଶଳ ଠାରୁ ଭିନ୍ନ ବିଷୟ ଗୁଡିକରେ ଜ୍ଞାନ ଥିବା ଦରକାର ହେଉଥିଲା । ପ୍ରଦତ୍ତ ଜ୍ଞାନ କୌଶଳର ଉପଯୋଗ ମଧ୍ୟ ହେଲାନାହିଁ । ତେଣୁ ଜଳନୀତିକୁ ଅବ୍ୟବହୃତ ଜ୍ଞାନକୌଶଳର ଉପଯୋଗୀତା ଦର୍ଶାଇ ଲେଖାଯିବା ଉଚିତ ଥିଲା ।

୧.୮. ଜଳର ପ୍ରଧାନ ଉପଯୋଗୀତା ହେଲା ଜଳସେଚନ । ସ୍ୱାଧୀନତା ବେଳକୁ ଜଳସେଚିତ ଜମିର ପରିମାଣ ୦.୧୭୭ ନିୟୁତ ହେକ୍ଟର ଥିଲା ଓ ଏବେ ଏହା ୧୯୯୯-୨୦୦୦ ଶେଷ ବେଳକୁ ୨.୫୩୮ ନିୟୁତ ହେକ୍ଟରରେ ପହଞ୍ଚିଲାଣି । ୨୦୫୦ ମସିହା ବେଳକୁ ଜଳ ଉପଯୋଗକାରୀଙ୍କ ସଂଖ୍ୟା ହେବ

୬୦ ନିୟୁତ । ଏଥିପାଇଁ ଏହାର ଯଥେଷ୍ଟ ବିକାଶ ହେବା ଦରକାର । ଯଦି ଏହି ଲୋକମାନଙ୍କୁ ଉଚିତ ଖାଦ୍ୟ ଓ ପୋଷଣ ଯୋଗାଇବା ଆମର କର୍ତ୍ତବ୍ୟ ହୁଏ ତେବେ ଏଥିପାଇଁ ସମସ୍ତ ଉଦ୍ୟମ କରାଯିବ । ବହୁପ୍ରସ୍ଥଯୁକ୍ତ ବିଶ୍ଳେଷଣରେ ଆଗରୁ ଘଟିଥିବା ସମସ୍ୟା ଗୁଡିକର ଯେଭଳି ପୁନରାବୃତ୍ତି ନ ଘଟେ, ତାର ବ୍ୟବସ୍ଥା କରାଯିବ । ଯାହା ପରିକଳ୍ପନା କରାଯାଉଛି ଓ ଯାହା ଅସୁବିଧା ଅଛି ସେଗୁଡିକ ହେଲା ଜମିର ଉପଯୋଗୀତା, ସବୁବେଳେ ଧାନ ଚାଷ (ଅଣଯୋଜିତ ଭାବେ), ନାଳରେ ପଛୁଆ ପାଣି ପ୍ରବାହ ଯୋଗୁଁ ଅନେକ ପାଣି ନଷ୍ଟ ହୁଏ । ଜଳସେଚନରେ ଜଳର ବିତରଣ, କେନାଲର ଉପର ଓ ତଳ ମୁଣ୍ଡରେ ସମାନ ହୁଏନାହିଁ । ହୁଏତ ତଳ ମୁଣ୍ଡରେ ଉର୍ବର ଜମିରେ ଏବେ ପାଣି ଜମା ହୋଇ ରହିଛି, କାରଣ ଭୁଲ୍ ଡିଜାଇନ ଓ କାର୍ଯ୍ୟପ୍ରଣାଳୀ ଅନୁସୃତ ହୋଇଛି, ଫଳରେ ଚାଷ ଜମିଟିରେ ଫସଲ ନ ହୋଇପାରି ପଡିଆ ପଡିଛି । ତେଣୁ ସବୁ ଯୋଗାଣକାରୀ ପକ୍ଷ ଓ ଉପଭୋକ୍ତାମାନଙ୍କ ମଧ୍ୟରେ ଜଳସେଚନରେ ଜଳର ଉପଯୁକ୍ତ ଆବଶ୍ୟକତା ଓ ଉପଯୋଗୀତା ସମ୍ବନ୍ଧରେ ସଙ୍ଗତିଯୁକ୍ତ ମତାମତ ରହିବା ଉଚିତ ।

ସ୍ପଷ୍ଟୀକରଣ :

ରାଜ୍ୟର ସୀମିତ ବିକାଶ ପରିପ୍ରେକ୍ଷୀରେ ଜଳସେଚନର ସମ୍ଭାବନାକୁ ଅଧିକ ବିସ୍ତାର୍ଣ୍ଣ କରିବା ଏହି ଜଳନୀତିର ଉଦ୍ଦେଶ୍ୟ । କିନ୍ତୁ ଦୁଇଟି ଅନ୍ୟ କାରଣ ଯାହାକୁ ନଜର ଦିଆଯାଇନାହିଁ, ତାହା ହେଲା -

କ) ସମ୍ଭାବ୍ୟ ସେଚାଞ୍ଚଳ ଓ ପ୍ରକୃତ ଜଳସେଚନ ପାଇଥିବା ଅଞ୍ଚଳ ମଧ୍ୟରେ ବ୍ୟବଧାନ ସୃଷ୍ଟି ହେବାର କାରଣ ।

ଖ) ବାସ୍ତବ କ୍ଷେତ୍ରରେ ହେଉଥିବା ଚାଷପ୍ରଣାଳୀ ଏବଂ ଯୋଜନାରେ ପ୍ରସ୍ତାବିତ ବ୍ୟବସ୍ଥା ଭିତରେ ଥିବା ବ୍ୟବଧାନର କାରଣ ।

ପ୍ରଥମଟି ଅନୁସାରେ ବ୍ୟବଧାନ ପ୍ରାୟ ଶତକଡ଼ା ୩୦ ଭାଗ । ଜଳନୀତିରେ ଏହି ବ୍ୟବଧାନକୁ କମ୍ କରିବାର କିଛି ବ୍ୟବସ୍ଥା ନାହିଁ । ଯଦି କିଛି ବ୍ୟବସ୍ଥା ହୁଏ, ତାହେଲେ କାର୍ଯ୍ୟାନ୍ୱୟନ ପ୍ରଣାଳୀରେ ପରିବର୍ତ୍ତନ ନିଶ୍ଚିତ, ନହେଲେ ପ୍ରସ୍ତାବିତ ପରିମାଣ ଠାରୁ କମ୍ ଫସଲ ଉତ୍ପାଦନ ହେବ ।

ଦ୍ୱିତୀୟ ଭାଗଟି ଆହୁରି ଉଲ୍ଲେଖଯୋଗ୍ୟ କାରଣ ପ୍ରସ୍ତାବିତ କ୍ଷେତ୍ରଫଳ କମ୍ ହେବା ସଙ୍ଗେ ସଙ୍ଗେ କମ୍ ଉତ୍ପାଦନ ମଧ୍ୟ ହୋଇଥାଏ । ପ୍ରସ୍ତାବିତ ଜଳସେଚନ ପାଇଁ ତିଆରି ହୋଇଥିବା ସମ୍ପତ୍ତି । ସାମଗ୍ରୀ ଗୁଡିକ ଯୋଜନା ଓ ବ୍ୟବହାର ମଧ୍ୟରେ ଥିବା ବ୍ୟବଧାନ ଯୋଗୁଁ ନଷ୍ଟ ହୋଇଯିବ ।

ଏହି ପରିଚ୍ଛେଦଟି ଏହି ଆଭିମୁଖ୍ୟକୁ ବୁଝାଇ ପାରିବା ଭଳି ପୁଣିଥରେ ଲେଖାଯିବା ଉଚିତ ।

୧.୯. ୧୯୮୭ ମସିହାରେ ରାଷ୍ଟ୍ରୀୟ ଜଳନୀତି ଉପରେ ପର୍ଯ୍ୟବେସିତ ଓଡ଼ିଶା ଜଳନୀତି, ୧୯୯୪ ମସିହାରେ ଏସବୁ ମୁଖ୍ୟ ବିଷୟକୁ ନେଇ ପ୍ରଣୀତ ହେଲା । ତା'ପରେ ଜଳ ଉତ୍ସର ବିକାଶ ଓ ପରିଚାଳନା ନିମନ୍ତେ ଅନେକ ତର୍କମା ଚାଲିଲା । ତେଣୁ ୧୯୮୭ର ସେହି ରାଷ୍ଟ୍ରୀୟ ଜଳନୀତିର ଆଉଥରେ ବ୍ୟାଖ୍ୟା ହେବା ଦରକାର । ଯାହା ଫଳରେ ଏହା ରାଜ୍ୟ ଜଳନୀତି ସହିତ ମଧ୍ୟ ସଙ୍ଗତି ରଖିପାରିବ ।

ସ୍ପଷ୍ଟୀକରଣ :

ଜଳନୀତି ମନ୍ତବ୍ୟ କହେ ଯେ ରାଷ୍ଟ୍ରୀୟ ଜଳନୀତିରେ ପରିବର୍ତ୍ତନ ହେବା ଯୋଗୁଁ ଏଭଳି ଏକ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇପଡିଲା । ଏହା ରାଜ୍ୟର ଏବର ଆବଶ୍ୟକତା, ଲୋକମାନଙ୍କର ଦୃଷ୍ଟିକୋଣରେ କି ପରିବର୍ତ୍ତନ ଘଟିଛି ଓ ସଚେତନତା ବିଷୟରେ କିଛି ସୂଚାଏ ନାହିଁ । ଲୋକଙ୍କ ମଧ୍ୟରେ ସଚେତନତା ଓ ନୂଆ ଜ୍ଞାନ କୌଶଳ ଜଳକ୍ଷେତ୍ରରେ ଥିବା ସମସ୍ୟା ଗୁଡିକର ସମାଧାନ ପାଇଁ ଯେଉଁ ବାଟ ଫିଟାଇଛି ତା' ବିଷୟରେ କିଛି ସୂଚାଇ ନାହିଁ ।

ଜାତୀୟ ଜଳନୀତି ୨୦୦୨ ଅନୁଯାୟୀ ରାଜ୍ୟ ସରକାର ଯୋଜନା ବିକାଶ ଓ ଜଳ ପରିଚାଳନା ପାଇଁ ଯେଉଁସବୁ ପଦକ୍ଷେପ ଗ୍ରହଣ କଲେ ତାହା ନିମ୍ନମତେ ପ୍ରଦତ୍ତ ହେଲା ।

## ୨. ସୂଚନା ବ୍ୟବସ୍ଥା

୨.୧. ସମ୍ୱଳ ବିନିଯୋଗ ପାଇଁ ଯୋଜନା କଲାବେଳେ ସମୁନ୍ନତ ସୂଚନା ବିଦ୍ୟାର ଆବଶ୍ୟକତା ଅତି ଗୁରୁତ୍ୱପୂର୍ଣ୍ଣ ଅଟେ । ଏହି ସୂଚନା ବ୍ୟବସ୍ଥା ବ୍ୟାପକ ହୋଇଥିବା ଆବଶ୍ୟକ ଏବଂ ଏଥିରେ ବିଭିନ୍ନ ବିଭାଗ ସମ୍ପର୍କରେ ପ୍ରତ୍ୟକ୍ଷାନୁଭୂତି ରହିଥିବା ଦରକାର, ଏବଂ ଏଥିରେ ଜଳ ସମ୍ପର୍କୀତ ତଥ୍ୟାବଳୀଗୁଡ଼ିକର ସଂଗ୍ରହ, ତାହାର ବୈଧିକରଣ, ଅଭିଲିଖନ ଓ ପ୍ରସାରଣ ଉପରେ ପ୍ରାଥମିକ ଭିତ୍ତିରେ ଗୁରୁତ୍ୱ ଦିଆଯିବ । ଏହି ସୂଚନାରେ ଜଳ ତଥା ଜଳବାୟୁ ସମ୍ପର୍କୀତ ଏବଂ ଜମି, ବନୀକରଣ ଓ ଫସଲ ଉତ୍ପାଦନ, ଭୂ-ସ୍ଥିତି, ପରିବେଶ ସମ୍ପର୍କୀୟ ଏବଂ ଏହି ସମ୍ବନ୍ଧୀୟ ଅନ୍ୟାନ୍ୟ ତଥ୍ୟ, ଜଳ ସମ୍ପଦର ବିକାଶ ଓ ପରିଚାଳନା ପାଇଁ ଆବଶ୍ୟକ । ଏକ ଉନ୍ନତମାନର ସୂଚନା ବ୍ୟବସ୍ଥା କରାଯାଇ ତଥ୍ୟ ବ୍ୟାଙ୍କର ନେଟ୍‌ୱାର୍କ ଜରିଆରେ ଅଧିକରୁ ଅଧିକ ତଥ୍ୟ ସଂଗ୍ରହ କରାଯିବ । ନୂଆ ନୂଆ ତଥ୍ୟ ସଂଗ୍ରହ ଫଳରେ ତଥ୍ୟ ବ୍ୟାଙ୍କର ଆକାର ଓ ଗୁଣାତ୍ମକମାନ ବୃଦ୍ଧି ହେବ । ଏହି ତଥ୍ୟସବୁ ପ୍ରାରମ୍ଭିକ ସ୍ତରରେ ହୋଇଥିବା ଜଳଛାୟାରୁ ସଂଗ୍ରହ କରାଯାଇ ସେସବୁକୁ ଡାଟା ପ୍ରୋସେସିଂ ଦ୍ୱାରା ଏକାଠି କରାଯିବ । ଯଦ୍ୱାରା ଆମକୁ ଏଥିରୁ କ୍ଷୁଦ୍ର ଜଳଛାୟା, ଜଳ ସଂଗ୍ରହକାରୀ, ଉପ ଜଳ ସଂଗ୍ରହକାରୀ, ଅବବାହିକା, ଉପ ଅବବାହିକା ଏବଂ ଏହିପରି କେତେକ କ୍ଷେତ୍ର ବିଷୟରେ ଆମେ ନୂତନ ତଥ୍ୟ ତିଆରି କରିପାରିବା ଏବଂ ଏହି ତଥ୍ୟକୁ ଭିତ୍ତି କରି ଯେକୌଣସି ସଂସ୍ଥା ଜଳ ସମ୍ୱଳ ବିକାଶ ପାଇଁ ଯୋଜନା କରିପାରିବେ ।

**ସ୍ପଷ୍ଟୀକରଣ :**

ନୋଡାଲ ବିଭାଗ ଗୁଡ଼ିକ ଏହି ସୂଚନା ସବୁ ମଧ୍ୟମ ଓ ବୃହତ ପ୍ରକଳ୍ପ ଗୁଡ଼ିକରୁ ନିଅନ୍ତି କାରଣ ସେମାନଙ୍କର ଅନୁଭୂତି ସୀମିତ ଓ ସେମାନେ ବିଭାଗୀୟ ସ୍ୱାର୍ଥ ଦୃଷ୍ଟିରୁ କାମ କରନ୍ତି ।

ଅଣୁ ଜଳଛାୟା ଗୁଡ଼ିକ ଜଳଉତ୍ସର ବିକାଶ ପାଇଁ ଏକ ବଡ଼ ଧରଣର ଯୋଜନା ଆରମ୍ଭ କରିଛନ୍ତି । ଏ ଗୁଡ଼ିକ ଅନେକ ସ୍ୱୟଂସେବୀ ସଂସ୍ଥା ଓ ଅଣବୈଷୟିକ ବିଭାଗ ଦ୍ୱାରା ପରିଚାଳିତ ହେଉଛି । ଜଳନୀତିରେ ସେମାନଙ୍କର ତଥ୍ୟ ଓ ସୂଚନାର ଆବଶ୍ୟକତା ଥିବା ବିଷୟ ଅନୁଭୂତ ହୁଏନାହିଁ, ଏହା ହେବା ଉଚିତ । ବିଭିନ୍ନ ଜଳ ଉପଭୋକ୍ତା ଦଳ ଏହି ସୂଚନା ଗୁଡ଼ିକ ଆବଶ୍ୟକତା ଅନୁସାରେ ପାଇ ପାରିବା ପାଇଁ ବ୍ୟବସ୍ଥା ହେବା ଉଚିତ ।

୨.୨. ସୂଚନା ସଂଗ୍ରହ, ସାଙ୍କେତିକ ବିଭାଗୀକରଣ ଓ ପ୍ରସ୍ତୁତୀକରଣର ପଦ୍ଧତି ନିର୍ଦ୍ଦିଷ୍ଟ ହେବା ଉଚିତ । ଆଧୁନିକ ସୂଚନା ପଦ୍ଧତି ଅନୁସୃତ ହୋଇ ବିଭିନ୍ନ ବିଭାଗ ଓ ଉପଭୋକ୍ତାଙ୍କ ମଧ୍ୟରେ ସ୍ୱାଧୀନ ସୂଚନା ଆଦାନ ପ୍ରଦାନ ହେବା ଉଚିତ । ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ନିର୍ଭରଯୋଗ୍ୟ ତଥ୍ୟଗୁଡ଼ିକର ସଂଗ୍ରହ, ସେଗୁଡ଼ିକର ପ୍ରକ୍ରିୟାକରଣ, ପ୍ରସାରଣ ଆଦି କାର୍ଯ୍ୟ କରାଯିବାର ଲକ୍ଷ୍ୟ ରହିବା ଉଚିତ ।

**ସ୍ପଷ୍ଟୀକରଣ :**

ଆବଶ୍ୟକତା ନାହିଁ ।

## ୩. ଜଳସମ୍ପଦ ଯୋଜନା:

୩.୧. ବ୍ୟବହାରଯୋଗ୍ୟ ଜଳ ସମ୍ପଦରେ ଭୂମି ଉପର ଓ ଭୂମିତଳ ଜଳକୁ ଅନ୍ତର୍ଭୁକ୍ତ କରିବା ଆବଶ୍ୟକ । ପ୍ରତ୍ୟେକ ପ୍ରାଥମିକ ଜଳଛାୟା ଅନୁଯାୟୀ ଏହା ମିଳିବା କଥା ଓ ଅଧିକରୁ ଅଧିକ ପରିମାଣରେ ବିନିଯୋଗ ହେବା ଆବଶ୍ୟକ । ପ୍ରଥମତଃ ସ୍ଥାନୀୟ ବାସିନ୍ଦାମାନଙ୍କର ଆବଶ୍ୟକତା ପୂରଣ ପାଇଁ ଓ ଦ୍ୱିତୀୟତଃ,

ବୋହିଯାଉଥିବା ପାଣିକୁ ଦାରିଦ୍ର୍ୟ ଦୂରୀକରଣ ପାଇଁ ବିକାଶୋନ୍ମୁଖୀ କାର୍ଯ୍ୟକ୍ରମ ସକାଶେ ବ୍ୟବହାର କରିବା ଉଚିତ । ଏହାଦ୍ୱାରା ପାରିପାର୍ଶ୍ୱିକ ପ୍ରଦୂଷଣ ଓ ପରିବେଶ ସନ୍ତୁଳନ ନଷ୍ଟ ନ ହୋଇ ସାମାଜିକ ଅର୍ଥନୈତିକ ପରିସ୍ଥିତି ସୁଧାରିବାରେ ସୁବିଧା ହୁଏ ।

ସ୍ପଷ୍ଟୀକରଣ:

ପରିଚ୍ଛେଦ ୧.୪ରେ ମଧମ ଓ ବୃହତ୍ ଜଳପ୍ରକଳ୍ପ ଓ ଅନେକ ନଳକୂପ ସହିତ ଆହୁରି ଅନେକ ମଧବର୍ତ୍ତୀ ପ୍ରକଳ୍ପ କାର୍ଯ୍ୟକାରୀ ହେଲେ ମିଳୁଥିବା ପାଣିର ବହୁଳ ଉପଯୋଗ ହୋଇପାରିବ । ଉପଯୁକ୍ତ ଯୋଜନା ହେଲେ ଏହି ବିକାଶ ମୂଳକ କାର୍ଯ୍ୟକ୍ରମଗୁଡ଼ିକ ହାତକୁ ନିଆଯାଇପାରିବ । କେତେ ପରିମାଣରେ ନଦୀ ପାଣି ଉପଯୋଗ ହେଲା ଓ କେଉଁଥି ପାଇଁ ହେଲା ଏବଂ ଦାରିଦ୍ର୍ୟ ଉନ୍ମୋଚନ ପାଇଁ ପାଣି କେମିତି ବ୍ୟବହାର ହୋଇପାରିଲା, ଜଳନୀତିରେ ଏସବୁ ବିଷୟ ସ୍ପଷ୍ଟ ଭାବରେ ରହିବା ଉଚିତ ।

୩.୨. ଜଳସମ୍ପଦ ବିକାଶ ଓ ପରିଚାଳନାର ଯୋଜନା ପ୍ରାଥମିକ ଜଳଛାୟା ସ୍ତରଠାରୁ ଆରମ୍ଭ ହୋଇ କ୍ଷୁଦ୍ର ଜଳଛାୟା, ଅବସଂଗ୍ରାହୀକା, ସଂଗ୍ରାହୀକା, ତଥା ଉପ ଅବବାହିକା ଓ ନିଷ୍କାସନ ଅବବାହିକା ପର୍ଯ୍ୟନ୍ତ ପର୍ଯ୍ୟାୟ କ୍ରମେ କାର୍ଯ୍ୟକାରୀ କରାଗଲେ ବର୍ଷାଜନିତ ସମୁଦାୟ ଜଳରାଶିର ଉପଯୁକ୍ତ ଉପଯୋଗ ହୋଇପାରିବ । ଜଳ ସମ୍ପଦ ପ୍ରକଳ୍ପ କଲାବେଳେ ଏଭଳି ବ୍ୟବସ୍ଥା ହେବା ଉଚିତ ।

ସ୍ପଷ୍ଟୀକରଣ :

ଜଳନୀତି ଜଳତତ୍ତ୍ୱର ଗୋଟିଏ ନିଷ୍କାସନ ଅବବାହିକା ବା ଉପ-ଅବବାହିକାର ଯୋଜନା ବିଷୟରେ ପ୍ରସ୍ତାବ କରୁଛି । ସନ୍ଦର୍ଭରେ ଯୋଜନା କରୁଛି । ସେଥିପାଇଁ ମଧମ ଓ ବୃହତ୍ ଜଳପ୍ରକଳ୍ପ ଉପରେ ଜୋର ଦିଆଯାଇଛି । ଅନ୍ୟପକ୍ଷରେ ନିଷ୍କାସୀ ଅବବାହିକାକୁ ଉପ-ଅବବାହିକା, ଜଳ ସଂଗ୍ରାହୀକା, ଉପଜଳ ସଂଗ୍ରାହୀକା, ଜଳଛାୟା, କ୍ଷୁଦ୍ର ଜଳଛାୟା ଓ ଅଣୁ ଜଳଛାୟାରେ ବିଭକ୍ତ କରାଯାଇଛି । ଯଦି ଅଣୁ ଜଳଛାୟାରେ ଅଧିକାଂଶ ପାଣି ଧରି ରଖି ଦିଆଯାଏ, ଏଥିରୁ ଅଧିକ ପାଣି ହେଲେ କେତେ ପାଣି ନିଷ୍କାସୀ, ଅବବାହିକା ବାଟେ ଯିବ, ତେଣୁ ଯୋଜନା କାର୍ଯ୍ୟକାରୀ କରିବା ପାଇଁ କେତେ ବଡ଼ ଜଳସେଚନ କରାଯାଇପାରିବ ତାହା ସ୍ଥିର କରିବା ସହଜ ହେବ । ଯଦି ତଥାପି ଜଳ ବଳକା ହୁଏ ତାହେଲେ ଏକ ବୃହତ୍ ପ୍ରକଳ୍ପକୁ ହାତକୁ ନିଆଯାଇପାରେ ।

ଯଦି ଏଭଳି ଏକ ଯୋଜନା ହାତକୁ ନିଆଯାଏ ତାହେଲେ ଯେତେ ବର୍ଷାଜଳ ଉପଲବ୍ଧହେବ ପ୍ରାଥମିକ ଆବଶ୍ୟକତା ମେଣ୍ଟାଇବାରେ ଲାଗିବ । ଏହା ଦ୍ୱାରା ସବୁଠାରୁ ନିଷ୍ପେଷିତ ବର୍ଗ ଲାଭବାନ ହେବେ । କିନ୍ତୁ ଜଳନୀତିରେ ସେମିତି କିଛି ଉଲ୍ଲେଖ ନ ଥିବାରୁ ବଡ଼ ବଡ଼ ପ୍ରକଳ୍ପ ସବୁ କରାଯାଉଛି । କେବଳ ଜଳସେଚନ ବିଭାଗ ଏତେ ଦାୟିତ୍ୱ ତୁଲାଇବା ଅସମ୍ଭବ, ତେଣୁ ଅନ୍ୟ ଏକ ସୁବ୍ୟବସ୍ଥିତ ସଂସ୍ଥା ତିଆରି କରାଯିବା ଦରକାର । ଫଳତଃ ତାହା ବିଭିନ୍ନ କାର୍ଯ୍ୟ ସକାଶେ ଅର୍ଥ ବ୍ୟବସ୍ଥା କରିବ । ତେଣୁ ଏହା ବିକଳ୍ପ ଜଳନୀତିରେ ପ୍ରତିଫଳିତ ହେବା ଉଚିତ ।

୩.୩. ଜଳ ବହୁଳ ଅଞ୍ଚଳରୁ ଜଳକ୍ଲିଷ୍ଟ ଅଞ୍ଚଳକୁ ଜଳଯୋଗାଣ ହେବା ଉଚିତ । ପ୍ରଥମେ ଜଳ ଅବବାହିକାରେ ଅଣୁ ଜଳଛାୟା ଗୁଡ଼ିକର ଆବଶ୍ୟକତା ଓ ଯୋଗାଣ କ୍ଷମତା ହିସାବ କରିବା କଥା । ଏହା କ୍ଷୁଦ୍ର ଜଳଛାୟା, ଉପଜଳ ସଂଗ୍ରାହିକା, ଜଳସଂଗ୍ରାହୀକା, ଉପ ଅବବାହିକା ଓ ଏହିପରି ସମଗ୍ର ନଦୀ ଅବବାହିକା ପାଇଁ କରାଗଲେ ଭଲ ହେବ । ଏହା ପରେ କେଉଁଠାରେ ଜଳାଭାବ ବା ଜଳ ବହୁଳତା ଅଛି ତାହା ନିଶ୍ଚିତ କରାଯିବ ଓ ସେହି ଅନୁସାରେ ଜଳ ପୁର୍ନବଣ୍ଟନର ବ୍ୟବସ୍ଥା ହେବ ।

**ସ୍ପଷ୍ଟୀକରଣ :**

ପ୍ରଥମେ ଏକ ଅଣୁ ଜଳଛାୟାରେ ପାଣି ଯୋଗାଇଦିଆଯିବା ପରେ ଏହାକୁ ଗୋଟିଏ ଜଳଛାୟାରୁ ଅନ୍ୟ ଜଳଛାୟାକୁ ଉପଯୁକ୍ତ ଜଳବାହୀ ବ୍ୟବସ୍ଥା ଏବଂ ବିଭିନ୍ନ ପ୍ରକଳ୍ପ ମାଧ୍ୟମରେ ଯୋଗାଇ ଦିଆଯାଇ ପରିଶେଷରେ ଏହା ନଦୀ ଅବବାହିକା ଗୁଡ଼ିକୁ ସମ୍ପ୍ରସାରିତ କରାଯିବ । ଏବଂ ଏହି ବିଷୟରେ ସମ୍ପୃକ୍ତ ଅଞ୍ଚଳବାସୀଙ୍କ ସହିତ ବିଚାର ବିମର୍ଷ କରିବା ସହିତ ସେମାନଙ୍କର ଏଥିପ୍ରତି ଅନୁମୋଦନ ରହିବା ଆବଶ୍ୟକ ।

## ୪. ରାଜ୍ୟ ଜଳ ନକ୍ସା :

୪.୧. ରାଜ୍ୟ ଜଳ ନକ୍ସା ହେବ ଜଳସମ୍ପଦ ବିକାଶ ପାଇଁ ଏକ ନମୁନା । ଏହା ପ୍ରାଥମିକ ଜଳଛାୟାରେ ବର୍ଷାପାଣିକୁ ଅଟକାଇବା ଠାରୁ ଆରମ୍ଭ ହୁଏ, ଯେଉଁଠି ଏହା ମାଟି ଭିତରକୁ ପଶି ମରୁଡି ଦୂର କରେ । ସେଇଠି ବର୍ଷାପାଣିରେ ହିଁ ଜଳସେଚନ ହୋଇଥାଏ । ଏହା ଦ୍ୱାରା ଅଧିକ ବର୍ଷାଜନିତ କ୍ଷୟକ୍ଷତି କମ୍ ହୁଏ ଓ ନଦୀରେ ବନ୍ୟାଜଳ ମଧ୍ୟ କମିଯାଏ । ଏହିପରି ନକ୍ସା ପିଇବା ପାଣି, ସହର ଓ ଶିଳ୍ପ ବିକାଶ, ଜଳସେଚନ, ଜଳ ବିଦ୍ୟୁତ ଉତ୍ପନ୍ନ, ମାଛଚାଷ, ପର୍ଯ୍ୟାବରଣ ରକ୍ଷଣାବେକ୍ଷଣ ଓ ଆମୋଦଜନିତ ବ୍ୟବହାର କ୍ଷେତ୍ରରେ ତିଆରି ହେବ । ବନ୍ୟା ଓ ନିଷ୍କାସନ ପ୍ରଣାଳୀ ଉପରେ ଦୃଷ୍ଟି ରଖି ଏହା କରାଯିବ । ଏହି ଯୋଜନାଟି ପ୍ରଗତିଶୀଳ ଏହାକୁ ନୂଆ ସୂଚନା ଉପରେ ଦୃଷ୍ଟି ରଖି ତିଆରି କରାଯିବ, ନୂଆ ଚିନ୍ତାଧାରା ଓ ପରିବର୍ତ୍ତିତ କାର୍ଯ୍ୟବିଧି ଓ ପ୍ରାଥମିକତା ପରିପ୍ରେକ୍ଷୀରେ ଏହା ଆଧୁନିକ ହେବ । ଏହା ଅର୍ଥଲଗାଣକାରୀ ସଂସ୍ଥା ପାଇଁ ସୂଚୀ ଓ ପରିଚାଳନା ସମ୍ବନ୍ଧୀୟ ନିଷ୍ପତ୍ତି ପାଇଁ ଏକ ଦର୍ପଣ ପରି ହେବ । ସେଥିପାଇଁ ଏହି ସମ୍ବନ୍ଧୀୟ ସରକାରୀ ବିଭାଗମାନଙ୍କ ସହିତ ଯୋଗାଯୋଗ କରି ମୁଖ୍ୟ ପ୍ରକ୍ରିୟା ଗୁଡିକୁ ହୃଦୟଙ୍ଗମ କରିବା ସହିତ ସବୁ ସଂଶ୍ଳିଷ୍ଟ ବିଭାଗ ଗୁଡିକ ମୂଳରୁ ଏହି ନକ୍ସା ପ୍ରସ୍ତୁତିରେ ଅଂଶଗ୍ରହଣ କରିବା ଉଚିତ ।

**ସ୍ପଷ୍ଟୀକରଣ :**

ରାଜ୍ୟ ଜଳନୀତି ନଦୀ ଅବବାହିକା ସମ୍ବନ୍ଧୀୟ ତଥ୍ୟ ଉପରେ ଭିତ୍ତିକରି ଜଳନକ୍ସା ତିଆରି କରାଯାଇଛି । କିନ୍ତୁ ଏଥିରେ ସଂଗୃହୀତ ସୂଚନା ଅଣୁ ଜଳଛାୟା ସ୍ତରରେ ଆରମ୍ଭ କରାଯାଉଥିବା ଯୋଜନା ଉପରେ ଗୁରୁତ୍ୱ ଦେଇନାହିଁ । ଅଣୁ ଜଳଛାୟାର ଉପଭୋକ୍ତାଙ୍କ ଆବଶ୍ୟକତା ଉପରେ ଧ୍ୟାନ ନ ଦିଆଗଲେ ଯୋଜନା ଓ କାର୍ଯ୍ୟସୂଚୀର ଭାରସାମ୍ୟ ରହିବ ନାହିଁ । ତେଣୁ ଏହି ପରିଚ୍ଛେଦଟି ସେଇ ଲୋକମାନଙ୍କର ଆବଶ୍ୟକତାର ପ୍ରତିଫଳନ ପାଇଁ ଲେଖାଯିବା ଉଚିତ । ଗୋଟିଏ ବିଭାଗ ସମ୍ପୂର୍ଣ୍ଣ ଭାବେ ଏହା ଉପରେ ରେଖାପାତ କରିପାରିବ ନାହିଁ । ତେଣୁ ସମ୍ପୂର୍ଣ୍ଣ ଯୋଜନା ପ୍ରକ୍ରିୟାର ବିକେନ୍ଦ୍ରୀକରଣ ହେବା ଆବଶ୍ୟକ । ଗାଁ ଲୋକଙ୍କ ମତାମତ ମଧ୍ୟ ଉପଯୁକ୍ତ ବ୍ୟବସ୍ଥା ମାଧ୍ୟମରେ ପ୍ରତିଫଳିତ ହେବା ଉଚିତ । ସେଇ ନଥିପତ୍ରଟିକୁ ଅର୍ଥଲଗାଣ ଓ ପରିଚାଳନା ପାଇଁ ବ୍ୟବହାର କରାଯିବା କଥା ।

## ୫. ଅନୁଷ୍ଠାନ-ଗଠନଶୈଳୀ :

୫.୧. ଓଡ଼ିଶାର ଜଳସମ୍ପଦ ବିଭାଗ (DOWR) ସମସ୍ତ ଜଳ ସମ୍ପଦର ପରିକଳ୍ପନା, ବିକାଶ ଓ ପରିଚାଳନା କରିଥାଏ । ଜଳସମ୍ପଦର ବିକାଶ ଓ ପରିଚାଳନା ନିମନ୍ତେ ଗୋଟିଏ ବଡ଼ ନେଟୱାର୍କର ଆବଶ୍ୟକତା ରହିଛି । ଏଥିରେ ଜଳସମ୍ପଦ ବିଭାଗ ସହିତ ସମ୍ପୃକ୍ତ ସମସ୍ତ ବିଭାଗ (DOWR) ମିଶି କାମ କରିବେ ।

ସ୍ପଷ୍ଟୀକରଣ :

ଯଦି DOWR ସବୁ ସୂଚନା ତିଆରି କରେ, ତା ହେଲେ ଅନ୍ୟ ସଂସ୍ଥାମାନଙ୍କ ଆଭିମୁଖ୍ୟର ଆଉ କୌଣସି ମହତ୍ତ୍ୱ ରହିବନାହିଁ । ପିଇବା ପାଣି, ନଗର ଉନ୍ନୟନ ଓ ଶିଳ୍ପ ବ୍ୟବହାର, ପର୍ଯ୍ୟାବରଣ, ମାଛଚାଷ ଓ ବର୍ଷାପାଣି ଉପରେ ନିର୍ଭର କରି ଚାଷ ହେଉଥିବା ଫସଲକୁ ପାଣି ଯୋଗାଣ ଇତ୍ୟାଦି ବିଷୟରେ ସୂଚନା ସଂଗ୍ରହ ହେବା ଉଚିତ । ଏଗୁଡିକ ଅଲଗା ଅଲଗା ସଂଗୃହୀତ ହୋଇ ଗୋଟିଏ ଜାଗାରେ ସଙ୍କଳିତ ହେବା ଦରକାର । ଏହା ଦ୍ୱାରା ଲୋକଙ୍କୁ ଅନ୍ତର୍ଭୁକ୍ତ କରିବା ସହଜ ହେବ ।

୫.୨. ମୁଖ୍ୟ ନିର୍ବାହୀ ଯନ୍ତ୍ରୀ, ଓଡ଼ିଶା ଜଳଯୋଜନା ବିଭାଗ, ଜଳ ସମ୍ପଦ ବିଭାଗ, ବୃହତ୍ ଆକାରରେ ବହୁମୁଖୀ ନଦୀ ଅବବାହିକା ଯୋଜନା ସବୁ କରନ୍ତି । ଜଳ ଯୋଗାଣ ପ୍ରାଥମିକତାକୁ ଆଖିରେ ରଖି ଏଗୁଡିକୁ କରାଯାଇଥାଏ । ସ୍ଥାନୀୟ ସାମାଜିକ ସଂସ୍ଥାମାନଙ୍କର ବହୁମୁଖୀ ଏକକ ଗୁଡିକ ନଦୀ ଅବବାହିକା ଗୁଡିକର ପ୍ରାଞ୍ଜଳ ଯୋଜନା କରି ଭବିଷ୍ୟତ ବିକାଶ ଓ ପରିଚାଳନା ପାଇଁ କାର୍ଯ୍ୟ କରିବେ । ବିଭିନ୍ନ ବିଭାଗର ଉପଯୁକ୍ତ ସ୍ତରରେ କର୍ମଚାରୀଙ୍କୁ ବର୍ଷାପାଣି ପରିଚାଳନା କାମରେ ପ୍ରାଥମିକ ଜଳଛାୟାରେ ନିୟୋଜିତ କଲେ ପର୍ଯ୍ୟାୟ କ୍ରମେ ନଦୀ ଅବବାହିକା ପର୍ଯ୍ୟନ୍ତ ଏ ଯୋଜନାଟି ଚାଲୁ ରହିବ । **DOWR** ଦ୍ୱାରା ପ୍ରଣୀତ ଓ **WRB** ଦ୍ୱାରା ସମର୍ଥିତ ବର୍ଷା ପାଣି ଯୋଜନା, ନଦୀ ଅବବାହିକା ଯୋଜନା ଓ ଅନୁକୂଳ ପରିବେଶ ନିୟମ ପାଇଁ ଉପଯୁକ୍ତ ନିର୍ଦ୍ଦେଶମାନ ରହିବା ଉଚିତ ।

ସ୍ପଷ୍ଟୀକରଣ :

ଅତୀତରେ ତିଆରି ହୋଇଥିବା ପ୍ରସ୍ତାବ ସବୁ ଜଳସେଚନ ପ୍ରକଳ୍ପକୁ ହିଁ ବୁଝାଉଥିଲା । ଏବେ ଅନ୍ୟ ବିଭାଗ ଗୁଡିକ ଉପରେ ମଧ କିଛି ଦୃଷ୍ଟି ପଡିବା ପରି ମନେ ହୁଏ ନାହିଁ । ଚାଷବାସ ଉପରେ ଖାସ ଧ୍ୟାନ ଦିଆଯାଉନାହିଁ । ପ୍ରତ୍ୟେକ ବିଭାଗର ଉଚିତ ବୈଷୟିକ ଚିନ୍ତା ଧାରାକୁ ଉପଯୁକ୍ତ ନ୍ୟାୟ ଦେବାକୁ ହେଲେ ଜଳନୀତିରେ ଏସବୁର ବ୍ୟବସ୍ଥା ରହିବା ଉଚିତ । ବିଭାଗୀୟ ଯୋଜନା ନଥିପତ୍ର ଗୁଡିକ ଏକ ମିଳିତ ବୈଠକରେ ବିକେନ୍ଦ୍ରୀକରଣ ପାଇଁ ଆଲୋଚିତ ହେବା ଉଚିତ । OWPO ସରକାରୀ କଳ ଦ୍ୱାରା ପରିଚାଳିତ ନ ହୋଇ ଏଥିରେ ବିଶେଷଜ୍ଞ, ନାଗରିକ ଓ ଶିକ୍ଷାକ୍ଷେତ୍ରରୁ ସଭ୍ୟମାନେ ରହିବା ଉଚିତ ।

୫.୩. ନଦୀ ଅବବାହିକା ପାଇଁ ଥିବା ସଂସ୍ଥା (RBO) ଗୁଡିକର କାର୍ଯ୍ୟ ପରିସରକୁ ବୃଦ୍ଧି କରାଯାଇ, ତଦ୍ଦ୍ୱାରା ବହିଯାଉଥିବା ବର୍ଷାପାଣିର ପରିଚାଳନା ପାଇଁ ଯୋଜନା ପ୍ରସ୍ତୁତ କରିପାରିବା ଭଳି ସୁଯୋଗ ସୃଷ୍ଟି କରାଯିବ । ଏ ଦୁଇଟି ମିଶି ନଦୀ ଅବବାହିକା ପରିଯୋଜନାକୁ ପୂର୍ଣ୍ଣାଙ୍ଗ ରୂପ ଦେବେ । ଏଗୁଡିକରେ ବହୁ ପ୍ରକାର ଏକକକୁ ନେଇ ପ୍ରାଞ୍ଜଳ ଯୋଜନା ତିଆରି କରାଯାଇଛି ଯେପରିକି ବର୍ଷାପାଣି, ଜଳସେଚନ, ଜଳଛାୟା ଅନୁଯାୟୀ ଜଳ ବ୍ୟବହାର ଏବଂ ଜଳର ଅନ୍ୟାନ୍ୟ ବ୍ୟବହାର ନଦୀ ବ୍ୟବସ୍ଥାର ମଧ ଯୋଜନା କରାଯିବ ଯାହା ଫଳରେ ପାଣିର ବହୁତ ଉପଯୋଗ ହୋଇପାରିବ ।

ସ୍ପଷ୍ଟୀକରଣ :

RBO ଏକ ଉପଯୁକ୍ତ ମାଧ୍ୟମ ନ ହୋଇପାରେ । ଏଥିରେ ଜଳସେଚନ ବିଭାଗର ଅନେକ କର୍ମଚାରୀ ଥାଆନ୍ତି । ତେଣୁ ଏହି ସଂଗୃହୀତ ସୂଚନା ପ୍ରକୃତରେ କିପରି ଜଳସେଚନ ଯୋଜନା ପାଇଁ ଉପଯୁକ୍ତ ହେବ ? ଅନ୍ୟାନ୍ୟ ବିଭାଗର ସବୁ ଠିକ୍ ଭାବରେ ଉପସ୍ଥାପିତ ହୋଇ ନଥାନ୍ତି । ଏହାଦ୍ୱାରା ଜଳସେଚନର ଆବଶ୍ୟକତାଟି ଅଧିକ ପ୍ରତିଫଳିତ ହୁଏ ଓ ଅନ୍ୟ ବିଭାଗ ସବୁ ଉପେକ୍ଷିତ ହୁଏ । ସୂଚନା ସଂଗ୍ରହ କରିବା ଏକ ସ୍ୱତନ୍ତ୍ର କାର୍ଯ୍ୟ ହେବା ଉଚିତ । ଏହା ଦ୍ୱାରା ଏକୀକରଣ ସହଜ ହୋଇଯିବ ।

୫.୪. ଜଳ ସମ୍ବଳ ପରିଷଦକୁ ଓଡ଼ିଶା ସରକାରଙ୍କର ମୁଖ୍ୟ ଶାସନ ସଚିବ ପରିଚାଳନା କରନ୍ତି, ଏବଂ ଅନ୍ୟ ଉପଭୋକ୍ତା ବିଭାଗର ସଚିବମାନେ ଏହାର ସଭ୍ୟ ଅଟନ୍ତି । ନଦୀ ଅବବାହିକା ସଂଗଠନ ଓ ରାଜ୍ୟ ଜଳ ସମ୍ପଦ ଯୋଜନା ବିଭାଗ ଦ୍ୱାରା ପ୍ରସ୍ତୁତ କରାଯାଇଥିବା ସମ୍ପୂର୍ଣ୍ଣ ଜଳଛାୟା ପ୍ରକଳ୍ପର ନଦୀ ଅବବାହିକା ଯୋଜନାକୁ ନିୟମ ପ୍ରଣୟନକାରୀ ବିଭାଗ ଓ ପର୍ଯ୍ୟବେକ୍ଷଣ ସଂସ୍ଥାର ପ୍ରତିନିଧିମାନେ ମାର୍ଗଦର୍ଶନ, ପୁନରାଲୋଚନ କରିବେ ଏବଂ ସମର୍ଥନ ଦେବେ ।

## ୬. ଜଳ ବଣ୍ଟନରେ ପ୍ରାଥମିକତା :

୬.୧. ରାଜ୍ୟ ଜଳନୀତି ପରିପ୍ରେକ୍ଷୀରେ ପ୍ରାଥମିକତାନୁଯାୟୀ ପାଣିର ଏହିପରି ବଣ୍ଟନ କରାଯିବା ଉଚିତ -

* ପିଇବା ପାଣି ଓ ତାହାର ଘରୋଇ ବ୍ୟବହାର
* ଦକ୍ଷତାପୂର୍ଣ୍ଣ ଜଳ ସେଚନ
* ଜଳ ବିଦ୍ୟୁତ୍ ସହିତ ଅକ୍ଷୁର୍ଣ୍ଣ ଜଳ ଅଧିକାର
* ପରିବେଶଗତ ସ୍ୱାସ୍ଥ୍ୟ ଉପରେ ଦୃଷ୍ଟି
* ଚାଷଭିତ୍ତିକ ଓ ଅଣଚାଷ ଭିତ୍ତିକ ଶିଳ୍ପ
* ନୌଚାଳନା ଓ ଅନ୍ୟାନ୍ୟ ବ୍ୟବହାର

ପ୍ରାଥମିକତା ଗୁଡିକୁ ଦରକାର ଅନୁଯାୟୀ ବଦଳା ଯାଇପାରେ କିମ୍ୱା ଅଧିକ କିଛି ଯୋଡି ଦିଆଯାଇପାରେ । କିନ୍ତୁ ପିଇବା ପାଣି ପାଇଁ ସର୍ବଦା ପ୍ରାଥମିକତା ରହିବ ।

### ସ୍ପଷ୍ଟୀକରଣ :

ପ୍ରାଥମିକତା ବିଷୟ କହିବାବେଳେ 'ପାନୀୟ ଜଳ' ଠାରୁ 'ଘରୋଇ ବ୍ୟବହାର'ର ମହତ୍ତ୍ୱ କିଛି କମ୍ ନୁହେଁ । ତେଣୁ ଏହାକୁ ମଧ ପିଇବା ପାଣି ସହିତ ପ୍ରାଥମିକ ଗୁରୁତ୍ୱ ଦିଆଯିବା ଉଚିତ । ଜଳସେଚନରେ ସବୁଠାରୁ ଅଧିକ ଜଳ ବ୍ୟବହାର ହୁଏ । କିନ୍ତୁ ଏଥିରେ ମଧ ପାଣିର ଶତକଡା ୬୫ ଭାଗ ନଷ୍ଟ ହୁଏ । ଏହି 'ନଷ୍ଟ'କୁ ନିୟନ୍ତ୍ରଣ କରିଦେଲେ ଅନ୍ୟାନ୍ୟ କ୍ଷେତ୍ରରେ ହେଉଥିବା ନିଅଣ୍ଟକୁ ଭରଣା କରିହେବ । ସେଥିପାଇଁ ଜଳସେଚନ ସହିତ ଦକ୍ଷତା ଶବ୍ଦଟି ମଧ ଯୋଡାଯାଇଥାଏ । ଜଳ ବିଦ୍ୟୁତ ଏକ ପ୍ରଧାନ ବିଷୟ, ମାତ୍ର ପ୍ରକଳ୍ପ ତଳେ ରହୁଥିବା ବାସିନ୍ଦାମାନଙ୍କ ଆବଶ୍ୟକତା ମଧ ଜରୁରୀ, କାରଣ ଜଳବିଦ୍ୟୁତ ଉତ୍ପନ୍ନ ହେବାପରେ ପାଣିଯାଇ ପୁଣି ନଦୀରେ ପଡେ, ଏଇ ମଝି ଭାଗଟି ଶୁଖିଲା ପଡିରହେ । ତେଣୁ ଲୋକଙ୍କର ଜଳ ଅଧିକାର କ୍ଷୁର୍ଣ୍ଣ ହୁଏ । ତେଣୁ ଏହି ସମୟ ମଧରେ ନଦୀକୁ ଉପଯୁକ୍ତ ମାତ୍ରାରେ ପାଣି ଛଡାଯିବା କଥା ।

ସାଧାରଣତଃ ଶିଳ୍ପରୁ ଉଦ୍‌ବୃତ୍ତ ଆବର୍ଜନା ମିଶା ଜଳ ନଦୀରେ ଛାଡିଲେ ନଈ ପାଣି ପ୍ରଦୂଷିତ ହେବାରୁ ପର୍ଯ୍ୟାବରଣର ସନ୍ତୁଳନ ନଷ୍ଟ ହୁଏ । ତେଣୁ ଏସବୁ ନଷ୍ଟାସିତ ପଦାର୍ଥକୁ ପ୍ରଥମେ ଶୋଧିତ କରାଯିବା ଆବଶ୍ୟକ । ଯେତେ ପରିମାଣର ଉଦ୍‌ବୃତ୍ତ ଜଳ ନଦୀକୁ ଆସୁଛି, ଯଦି ନଦୀ ସେହି ଅନୁପାତରେ ଛୋଟ ହୁଏ, ତା ହେଲେ ତାକୁ ଗୋଟିଏ ଜାଗାରେ ସାଇତି ରଖାଯାଇ ବର୍ଷାବେଳେ ଛାଡିବାକୁ ହେବ, ଯାହାଦ୍ୱାରା ପାଣି ସହିତ ଏହାର ଅନୁପାତ ନିରାପଦ ରହିବ ।

## ୭. ପ୍ରକଳ୍ପ ଯୋଜନା :

୭.୧. ଜଳ ସମ୍ପଦ ବିକାଶ ପ୍ରକଳ୍ପ ଗୁଡିକ ଅବବାହିକା ମାଷ୍ଟର ପ୍ଲାନ (Master Plan) ସହିତ ବିଚାର କରି କରାଯିବ । ଏଥିରେ ପ୍ରତି ଅଣୁ ଜଳଛାୟାର ଜଳ ସମ୍ପଦ ବିକାଶ ଆବଶ୍ୟକତା ସହିତ ମଧମ ଓ ବୃହତ୍ ପ୍ରକଳ୍ପ ଗୁଡିକୁ ମଧ ଦୃଷ୍ଟିରେ ରଖିବା ଉଚିତ । ଏହି ପ୍ରକଳ୍ପ ଗୁଡିକୁ ଯେତେ ଦୂର ସମ୍ଭବ ବହୁମୁଖୀ ପ୍ରକଳ୍ପ ଗୁଡିକ ହିସାବରେ ଯୋଜନା ଓ ବିକାଶ ହେବା ଆବଶ୍ୟକ । ପିଇବା ପାଣି ସକାଶେ ପ୍ରାଥମିକତା ଦିଆଯିବା ଉଚିତ ।

ସ୍ପଷ୍ଟୀକରଣ :

ଅବବାହିକା ଭିତ୍ତିକ ବିକାଶ ଯୋଜନା ହେବା ଉଚିତ । କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ଅବବାହିକାର ତଥ୍ୟ ନେଇ ବିକାଶ କାର୍ଯ୍ୟକ୍ରମ କରିପାରିବା ସମ୍ଭବ ନୁହେଁ ।

ନଦୀ ଉପର ମୁଣ୍ଡରୁ ଆରମ୍ଭ ହୋଇ ତଳକୁ ତଳ ଧୀରେ ଧୀରେ ବର୍ଷା ପାଣି ନଈକୁ ବୋହିଯାଏ । ନଈରେ ପଡିବା ପୂର୍ବରୁ ଏହି ବର୍ଷା ପାଣି ବହୁତ ବାଟ ଅତିକ୍ରମ କରିଥାଏ, ବାଟରେ ଏହା ଅନେକ ଚାଷଜମି ଦେଇ ପ୍ରବାହିତ ହୋଇଥାଏ । ଏତିକିବେଳେ ଜଳସେଚନ ବିଭାଗ ଏଥିପ୍ରତି ଦୃଷ୍ଟି ନ ଦେଇ କେବଳ ସେଚାଞ୍ଚଳ ସୃଷ୍ଟିପାଇଁ ବ୍ୟଗ୍ରତା ପ୍ରକାଶ କରିବା ଏକ ବିଡ଼ମ୍ବନା ଭଳି ମନେହୁଏ । ଜଳସଂଗ୍ରାହିକା ଓ ସେଚାଞ୍ଚଳ ଏହି ପ୍ରକଳ୍ପ ଦ୍ୱାରା ସଂଯୁକ୍ତ ହୋଇଥାଏ । ଗୋଟିଏ ବିକାଶ ଯୋଜନାର ଏହା ଦୁଇଟି ଅଙ୍ଗ । ଯଦି ଲାଭବାନ ହେବାର କିଛି ଉପାୟ ଥାଏ, ତା'ହେଲେ ତାହା ଉଭୟ ପକ୍ଷଙ୍କର ଲାଭବାନ ହେବା ହିଁ ଯୁକ୍ତିଯୁକ୍ତ । ଏହା କରାଯିବାର ଉପାୟ ଥିଲେ ମଧ୍ୟ ଜଳସମ୍ପଦ ବିଭାଗ ଏଥିପ୍ରତି ଅଦ୍ୟାବଧି ଦୃଷ୍ଟି ଦେଇନାହିଁ ।

ଲାଭରେ ଭାଗିଦାର କରିବା ବ୍ୟତୀତ ଜଳ ସଂଗ୍ରାହିକାକୁ ମୁଖ୍ୟ ସ୍ଥାନ ଦେବାର ଅନ୍ୟାନ୍ୟ କାରଣ ମଧ୍ୟ ରହିଛି । ସମସ୍ତ ଛୋଟ ଛୋଟ ନଈନାଳ ଶୀତଦିନେ ଶୁଖିଯାଏ, ନଈ ମଧ୍ୟ ଶୁଖେ । ଯଦି ବର୍ଷାଦିନିଆ ପାଣି ପ୍ରବାହ ଉପରେ ଭିତ୍ତି-କରି ଯୋଜନାର ପରିକଳ୍ପନା କରାଯାଏ, ତାହେଲେ ଉପଯୋଗୀତା ସୀମିତ ହୋଇଥାଏ ଓ ଏହାଦ୍ୱାରା କମ୍ ଆର୍ଥିକ ଲାଭ ହୁଏ । ତେଣୁ ସେଭଳି ପ୍ରକଳ୍ପ ଗୁଡିକୁ କରାଯାଉ, ଯେଉଁଗୁଡିକ ଜଳସେଚନର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ଶୀତଦିନେ ନଦୀ ଓ ନାଳରେ ପାଣି ପ୍ରବାହ ମଧ୍ୟ ବୃଦ୍ଧିହେବ ।

ଏହି ପରିପ୍ରେକ୍ଷିରେ ପ୍ରାଥମିକ ଅଣୁ ଜଳଛାୟା ସ୍ତରଠାରୁ ଆରମ୍ଭ କରି ତଥ୍ୟ ସଂଗୃହୀତ ହେବା ଆବଶ୍ୟକ । ସେଗୁଡିକୁ ଏକତ୍ରିତ କରାଯାଇ ସମସ୍ତ ଜଳଛାୟା ଗୁଡିକୁ କ୍ଷୁଦ୍ର ଜଳଛାୟା ଭିତ୍ତିକ, ଉପଜଳ ସଂଗ୍ରାହୀକା ଭିତ୍ତିକ, ଜଳ ସଂଗ୍ରାହିକା ଭିତ୍ତିକ ଓ ଶେଷରେ ଅବବାହିକା ଭିତ୍ତିକ ତଥ୍ୟ ସଂଗୃହୀତ ହୋଇପାରିବ । ଏହି ତଥ୍ୟ ଗୁଡିକ ଛୋଟ ଛୋଟ ଅନେକ ପ୍ରକଳ୍ପ ପାଇଁ ସୁଯୋଗ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆବଶ୍ୟକ ମତେ ଯେଉଁଠିକି ମଧ୍ୟମ ଓ ବୃହତ୍ ପ୍ରକଳ୍ପ ହାତକୁ ନିଆଯାଇଥାନ୍ତା । ଜଳ ସମ୍ପଦ ପ୍ରକଳ୍ପ ପରିବର୍ତ୍ତେ ଏହା କ୍ଷେତ୍ର ବିକାଶ ଯୋଜନା ହୋଇଗଲେ ବେଶୀ ଆର୍ଥିକ ସହାୟତା ଆଣିପାରିବ ।

> ୭.୨. ଜଳପ୍ରକଳ୍ପ ତିଆରି ଓ ତା' ପରବର୍ତ୍ତୀ ଅବସ୍ଥା ମଣିଷର ଜୀବନ, ଆର୍ଥିକ, ସାମାଜିକ, ପର୍ଯ୍ୟାବରଣ ଓ ଅନ୍ୟାନ୍ୟ ସବୁ ବିଷୟ ଉପରେ କିପରି ପ୍ରଭାବ ପକାଉଛି, ଏହାର ଆକଳନ କରିବା ପ୍ରକଳ୍ପ ଯୋଜନାର ଅଂଶବିଶେଷ ହେବା ଉଚିତ । ଏହା ଜଳସଂଗ୍ରାହିକାର ପରିସ୍ଥିତି ଉପରେ ମଧ୍ୟ ନିର୍ଭର କରିବ ।

ସ୍ପଷ୍ଟୀକରଣ :

ଏହି ପ୍ରସ୍ତାବନାଟି ସ୍ୱାଗତଯୋଗ୍ୟ ଓ ଏଭଳି ସର୍ଭେମାନ ଜଳସଂଗ୍ରାହୀକାର ପ୍ରକୃତ ପରିସ୍ଥିତି ଉପରେ ମଧ୍ୟ ଆଲୋକପାତ କରିବ ।

> ୭.୩. ପରିବେଶ ଓ ପର୍ଯ୍ୟାବରଣ, ଯୋଜନା, ପରିକଳ୍ପନା ଓ ପ୍ରକଳ୍ପ କାର୍ଯ୍ୟାନ୍ୱୟ ବିଷୟରେ ପ୍ରାଥମିକ ଗୁରୁତ୍ୱ ଦେବା ଉଚିତ । ମାଟି ସନ୍ତସନ୍ତିଆ ଓ ଜଳମଗ୍ନ ହୋଇ ରହିବା ଦ୍ୱାରା ଏହାର ପରିବେଶ ଉପରେ ବିପରୀତ ପ୍ରଭାବ ପଡେ, ତେଣୁ ଉପଯୁକ୍ତ ନିଷ୍କାସନ ବ୍ୟବସ୍ଥା ଦ୍ୱାରା ଏହାକୁ କମେଇ ଦିଆଯାଇପାରେ । ଏହା ମଧ୍ୟ ପରିବେଶ ପାଇଁ ଉପଯୋଗୀ ହେବା ଉଚିତ ।

ସ୍ପଷ୍ଟୀକରଣ :

ପ୍ରକଳ୍ପ କାର୍ଯ୍ୟକାରୀ ହେବାବେଳେ କିଛି ପ୍ରଦୂଷଣ ହେବା ସୁନିଶ୍ଚିତ । ଉଦାହରଣ ସ୍ୱରୂପ ପ୍ରକଳ୍ପଟି କାର୍ଯ୍ୟକାରୀ କଲାବେଳେ ପରିବେଶ ଉପରେ ଅଧିକ ପ୍ରଭାବ ପଡିଥାଏ । ଉପରମୁଣ୍ଡରେ ଏକ ବଡ଼ ଜଳାଶୟ ହେବା ଫଳରେ କ୍ରମେ

ଉଦ୍ଭିଦ ଓ ଜଳଜନ୍ତୁଙ୍କ ବିକାଶ ହୁଏ । କିନ୍ତୁ ଅବବାହିକାଞ୍ଚଳ ଜଳମଗ୍ନ ହେବାଦ୍ୱାରା ସ୍ୱାସ୍ଥ୍ୟ ସମସ୍ୟା ମଧ୍ୟ ଉପୁଜିଥାଏ । ପ୍ରତିକୂଳ ପ୍ରଭାବ ଗୁଡ଼ିକୁ ରୋକାଯାଇପାରିବ, କିନ୍ତୁ ଏ ସମ୍ପର୍କରେ କର୍ତ୍ତୃପକ୍ଷ ସଚେତନ ନୁହଁନ୍ତି । ପ୍ରକଳ୍ପ ନୀତି ଏ ଦିଗରେ ଦିଗ୍‌ଦର୍ଶନ ଦେବା ଉଚିତ ।

**୭.୪. ଅନ୍ୟାନ୍ୟ ବିଭାଗଗୁଡ଼ିକୁ ନେଇ ମଧ୍ୟ ଯୋଜନା, ସଂରଚନା ଓ କାର୍ଯ୍ୟାନ୍ୱିତ ହେବା ଉଚିତ । ସଂଗ୍ରାହିକା କ୍ଷେତ୍ରର ପରିଚାଳନା ଓ ପ୍ରଭାବିତ ଲୋକଙ୍କ ଥଇଥାନ ବିଷୟ ମଧ୍ୟ ଚିନ୍ତା କରାଯିବା ଉଚିତ ।**

**ସ୍ପଷ୍ଟୀକରଣ :**

ବିଭିନ୍ନ ବିଭାଗର ମତାମତ ନେଇ କାମ କରିବା ବିଷୟରେ ଉଲ୍ଲେଖ ଥିଲେ ମଧ୍ୟ କାର୍ଯ୍ୟତଃ ଜଳସମ୍ପଦ ବିଭାଗ ନିଜର ମତାମତ ଉପରେ ହିଁ ଗୁରୁତ୍ୱ ଦେଇଥାଏ । ଅନ୍ୟ ବିଭାଗର ମତାମତ ଉପରେ ସେଭଳି କିଛି ଗୁରୁତ୍ୱ ଦିଆଯାଏ ନାହିଁ । ତେଣୁ ଆଜିର ପ୍ରକଳ୍ପ ସଂରଚନାର ଭିତ୍ତି ଚାଳିଶ ବର୍ଷର ପୁରୁଣା ପ୍ରକଳ୍ପର ଭିତ୍ତି ମଧ୍ୟରେ କିଛି ଖାସ୍ ପାର୍ଥକ୍ୟ ନାହିଁ । କୃଷି କ୍ଷେତ୍ରରେ ଇତି ମଧ୍ୟରେ ଏକ ସମ୍ପୂର୍ଣ୍ଣ ସବୁଜ ବିପ୍ଳବ ଘଟିଯାଇଛି । କିନ୍ତୁ ଜଳସେଚନ ପ୍ରକଳ୍ପ ଗୁଡ଼ିକରେ ବହୁ ଫସଲ ପର୍ଯ୍ୟାୟ ଗୁଡ଼ିକ କାର୍ଯ୍ୟକାରୀ କରିବାର ମୂଳ ଆବଶ୍ୟକତାକୁ ପୂରଣ କରିବାପାଇଁ ଆବଶ୍ୟକ ପରିବର୍ତ୍ତନ କରାଯାଇନାହିଁ ।

ଉଦାହରଣ ସ୍ୱରୂପ - ଚାଳିଶ ବର୍ଷ ପୂର୍ବେ ଜଳସେଚନ ପ୍ରକଳ୍ପ ଗୁଡ଼ିକ କେବଳ ଧାନ ଓ ଡ଼ାଲି ଜାତୀୟ ଫସଲକୁ ଜଳସେଚନ ଯୋଗାଇଥିଲେ । ଆଜି ଫସଲର ବିଭିନ୍ନତା ଘଟିଛି । ପୁଣି ପ୍ରତ୍ୟେକ ଫସଲର ବିଭିନ୍ନ କିସମ ମଧ୍ୟ ବଢ଼ିଛି । ଏକ ଅନୁକୂଳ ପରିସ୍ଥିତି ସକାଶେ ଆଧୁନିକ ଜଳସେଚନ ପଦ୍ଧତି ବହୁ ପରିମାଣରେ ନମନୀୟ ହେବା ଆବଶ୍ୟକ କିନ୍ତୁ ଦୁର୍ଭାଗ୍ୟବଶତଃ ତାହା ହୋଇନାହିଁ ।

ଚାଳିଶ ବର୍ଷ ପୂର୍ବ ଠାରୁ ଏବେ ଅଧିକ ଲାଭଦାୟୀ ଏକକରେ ପ୍ରଭାବିତ ଲୋକଙ୍କୁ ଥଇଥାନ କରାଯାଇପାରିବ । କିନ୍ତୁ ତଥାପି ପୁରୁଣା ପ୍ରଥା ଅନୁଯାୟୀ ଲୋକଙ୍କୁ ଜମି ଓ ପଇସା ଦେଇ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରାଯାଉଛି ଏବଂ ସେମାନେ କିଭଳି ଭାବରେ ଏହାର ବିନିଯୋଗ କରି ନିଜର ପରିବାରର ଥଇଥାନ କରାଇ ପାରୁଛନ୍ତି । ତାକୁ ବୁଝିବା ପାଇଁ କି ବ୍ୟବସ୍ଥା କରାଯାଇଛି । ସେ ବିଷୟରେ କିଛି ହେଲେ ସୂଚନା ଦିଆଯାଉନାହିଁ ।

**୭.୫. ଅନୁସୂଚିତ ଉପଜାତିଙ୍କ ପାଇଁ ସ୍ୱତନ୍ତ୍ର ଭାବେ ବିଚାର କରାଯିବା ଉଚିତ । ଏହା ସାମାଜିକ ଦୁର୍ବଳ ଲୋକଙ୍କ ପାଇଁ ମଧ୍ୟ ପ୍ରଯୁଜ୍ୟ । ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ଅନୁସୂଚିତ ଜାତି ଓ ଉପଜାତିଙ୍କ ସକାଶେ ପ୍ରକଳ୍ପ ଯୋଜନାରେ ନିର୍ଦ୍ଦିଷ୍ଟ ଉଦ୍ୟମ ରହିବା ଉଚିତ । ଏଇ ଦୁର୍ବଳ ଗୋଷ୍ଠୀ ସ୍ୱାର୍ଥକୁ ପ୍ରକଳ୍ପର ଆର୍ଥିକ ମୂଲ୍ୟାଙ୍କନ ବେଳେ ଦୃଷ୍ଟିରେ ରଖିବା ଉଚିତ ।**

**୭.୬. ନିଷ୍କାସନ ପଦ୍ଧତିରେ ପାଣିକୁ ବାରମ୍ବାର ବ୍ୟବହାର କରାଯାଇ ପାରିବାର ବ୍ୟବସ୍ଥା ମଧ୍ୟ ରହିବା ଦରକାର ଓ ଏଥିରେ ସ୍ଥାନୀୟ ବାସିନ୍ଦାଙ୍କୁ ମଧ୍ୟ ସାମିଲ କରାଯିବା ଉଚିତ । ପାଣିକୁ ସଫା ରଖି ଲାଭଦାୟକ ଭାବରେ ବ୍ୟବହାର କରାଯାଇପାରିବ ।**

**ସ୍ପଷ୍ଟୀକରଣ :**

ଉପଯୁକ୍ତ ବ୍ୟବସ୍ଥା ନ ହେଲେ ଯେ କୌଣସି ଜଳ ପ୍ରକଳ୍ପରେ ନିଷ୍କାସନର ବହୁତ ସମସ୍ୟା ଦେଖାଦେଇ ପାଣି ଜମା ରହେ । ଘାସ ଓ ଅନାବନା ଗଛ ଉଠି ସବୁବେଳେ ନିଷ୍କାସନରେ ସମସ୍ୟା ସୃଷ୍ଟି କରନ୍ତି । ପୁଣି ଲୋକେ ଏହାକୁ ଜଳସେଚନ ପାଇଁ ମଧ୍ୟ ବାନ୍ଧି ରଖନ୍ତି । ତେଣୁ ଜଳସେଚନ ଓ ନିଷ୍କାସନ ଏକତ୍ର ଚିନ୍ତା କରାଯିବା ଆବଶ୍ୟକ । ଏହା କରାଗଲେ କିନ୍ତୁ ପ୍ରକଳ୍ପ ବ୍ୟୟ ବଢ଼ିଯିବ । ଲାଭର ସ୍ତର ଅପରିବର୍ତ୍ତିତ ରହୁଥିବାରୁ ଏହାର ଔଚିତ୍ୟ ପ୍ରତିପାଦନ ହୋଇପାରେନାହିଁ । କିନ୍ତୁ ଏଭଳି ନ କରାଯିବାର ଏହା ଏକ ବାହାନା, ଅଳ୍ପ ଖର୍ଚ୍ଚରେ ଏପରି ବ୍ୟବସ୍ଥା କରିବାର ଯଥେଷ୍ଟ ଅବକାଶ ରହିଛି । ତେଣୁ ଆବଶ୍ୟକ ପରିବର୍ତ୍ତନ (ଜଳନୀତିରେ) କରାଯାଇଛି ।

| |
|---|
| ୭.୭. ସମୟ ଅନୁସାରେ ବ୍ୟୟ ବଢ଼ିଯାଏ ଓ ପ୍ରକଳ୍ପଟି ଉପଯୋଗ ନ ହୋଇ ପାରୁଥିବା ଦୃଷ୍ଟିରୁ ଯୋଜନା ଓ ନିର୍ମାଣ କାର୍ଯ୍ୟର ସୁପରିଚାଳନା ତଥା ଅର୍ଥ ଓ ଜଳ ବିଭାଗର ପରସ୍ପର ସହିତ ଯୋଗାଯୋଗ ରଖାଯିବା ଉଚିତ୍ । ଉପଯୁକ୍ତ ଅର୍ଥ ବ୍ୟବସ୍ଥା ପ୍ରାଥମିକତା ଭିତ୍ତିରେ ରଖାଗଲେ ନିଅଣ୍ଟିଆ ପରିସ୍ଥିତିକୁ ନିୟନ୍ତ୍ରଣ କରାଯାଇପାରେ । ଏହାଦ୍ୱାରା ସ୍ଥାନୀୟ ଅସନ୍ତୋଷକୁ ମଧ୍ୟ କମେଇ ଦିଆଯାଇପାରେ । |

ସ୍ପଷ୍ଟୀକରଣ :

କୌଣସି ପରିବର୍ତ୍ତନ ଦରକାର ନାହିଁ ।

| |
|---|
| ୭.୮. ଜଳଛାୟା ପରିଚାଳନା ସହିତ ଜଳ ସଂଗ୍ରାହୀକାରେ ମୃତ୍ତିକା ସଂରକ୍ଷଣ, ବୃକ୍ଷରୋପଣ ଏବଂ ଚେକ୍ ଡ୍ୟାମ୍ ତିଆରି ବହୁଳ ଭାବରେ ହେବା ଉଚିତ ଯେମିତି ଅଧିକ ବର୍ଷାପାଣି ଅଟକାଇ ରଖାଯାଇପାରିବ ଓ ମାଟି ତଳକୁ ସଂଚରଣ କରାଯାଇ ପାରିବ । ଏହାଦ୍ୱାରା ମୃର୍ତ୍ତିକା କ୍ଷୟ କମିବ ଓ ପଟୁ କମ୍ ବସିବ । ଜଳସଂଗ୍ରାହୀକାରେ ଜଳକୁ ଧରି ରଖାଯିବାର ପ୍ରଚେଷ୍ଟା ହେବ । |

ସ୍ପଷ୍ଟୀକରଣ :

ପ୍ରକଳ୍ପ ଜଳାଶୟ ଭିତରେ ପଟୁମାଟି ନ ଜମିବା ପାଇଁ ହିଁ ଜଳଛାୟା ପରିଚାଳନା ବିଷୟକ ଯୋଜନା ଜଳସମ୍ପଦ ବିଭାଗ ଦ୍ୱାରା କରାଯିବାର ବ୍ୟବସ୍ଥା ହୋଇଛି । ଏହା ଏକ ସୀମିତ ଦୃଷ୍ଟିଭଙ୍ଗୀ । ସେଥିପାଇଁ ନାମକୁମାତ୍ର ଅର୍ଥ ବରାଦ କରାଯାଏ । ଏହି କାମ ମଧ୍ୟ ଅନ୍ୟ ଏକ ବିଭାଗକୁ ଦିଆଯାଇଥାଏ । ଏକ ବିସ୍ତୃତ ଦୃଷ୍ଟିଭଙ୍ଗୀ ସକାଶେ ଏଭଳି ଏକ ମନୋବୃତ୍ତିରେ ପରିବର୍ତ୍ତନ ଆବଶ୍ୟକ । ଜଳଛାୟାର ବିକାଶକୁ ସେହି ଅଞ୍ଚଳରେ ବାସ କରୁଥିବା ଲୋକମାନଙ୍କର ଜୀବିକାର୍ଜନର ଏକ ବିକାଶଧାରା ରୂପେ ବିଚାର କରାଯିବା ଉଚିତ । ଯେମିତି ଏହାଦ୍ୱାରା ଉଭୟ ଜୀବନ ଜୀବିକାର ବିକାଶ ତଥା ଜଳ ଭଣ୍ଡାର ମଧ୍ୟକୁ ପଙ୍କ ପ୍ରବେଶକୁ ରୋକିବା ଆଦି ବହୁମୁଖୀ ଲକ୍ଷ୍ୟ ପୂରଣ ହୋଇପାରିବ । ଫଳରେ ଜଳ ସମ୍ବଳ ପ୍ରକଳ୍ପର ବିକାଶ ପାଇଁ ଏହିସବୁ କାର୍ଯ୍ୟକ୍ରମ ଗୁଡ଼ିକୁ ପ୍ରକଳ୍ପ ମଧ୍ୟରେ ପ୍ରଚଳନ କରିବା ପାଇଁ ସୁଯୋଗ ମିଳିଯିବ ।

ଏହା ହେଲେ ବୋହିଯିବା ବର୍ଷାପାଣିର ମାତ୍ରା କମିଯିବ । ମୃର୍ତ୍ତିକା ଅବକ୍ଷୟ କମିବ । ଭୂତଳ ଜଳସ୍ତର ବୃଦ୍ଧି ପାଇବ ଓ ସଂଗ୍ରାହିକା ଅଞ୍ଚଳର ନଦୀନାଳରେ ବର୍ଷା ଉପରୋକ୍ତ ପ୍ରବାହ ବଢ଼ିବ । ସେଇ ପରିପ୍ରେକ୍ଷୀରେ ଚିଠାରେ ପରିବର୍ତ୍ତନ କରାଯାଇଛି ।

| |
|---|
| ୭.୯. ଉପକୃତ ହୋଇଥିବା ବ୍ୟକ୍ତି ଓ ଅନ୍ୟାନ୍ୟ ଅଂଶୀଦାରଙ୍କ ଅଂଶଗ୍ରହଣ ଓ ସାମିଲ ହେବା ନିଶ୍ଚିତ କରିବା ଲାଗି ପଞ୍ଚାୟତିରାଜ ପଦ୍ଧତି ଓ ଜନଶୁଣାଣି ମାଧ୍ୟମର ଉପଯୋଗ କରାଯିବା ଉଚିତ । |

ସ୍ପଷ୍ଟୀକରଣ :

ବର୍ତ୍ତମାନ ପ୍ରକଳ୍ପ ଯୋଜନା ଓ ନିର୍ମାଣରେ ଅଂଶୀଦାରଙ୍କ ଅଂଶଗ୍ରହଣ ସକାଶେ କୌଣସି ବିଧିବଦ୍ଧ ବ୍ୟବସ୍ଥା ନାହିଁ । ଜନଶୁଣାଣୀ ଏକମାତ୍ର ବ୍ୟବସ୍ଥା ଅଟେ । କିନ୍ତୁ ଏହା ମଧ୍ୟ ସେତେ ସନ୍ତୋଷଜନକ ନୁହେଁ । କାରଣ ଏହି ଶୁଣାଣିର ଯେଉଁ ରେକର୍ଡ ଜଳ ସମ୍ବଳ ବିଭାଗ କର୍ମଚାରୀମାନଙ୍କ ଦ୍ୱାରା କରାଯାଇଥାଏ, ତାହାକୁ ସେହି ବିଭାଗର କର୍ମଚାରୀମାନେ ଆବଶ୍ୟକତାନୁସାରେ କାଣ୍ଟଛାଣ୍ଟ କରି ଚଳେଇ ଦିଅନ୍ତି । ସଦିଚ୍ଛାର ଅଭାବ (ଯାହା ଅନେକାଂଶରେ ସତ୍ୟ) ଫଳରେ ଏଭଳି ଏକ କାର୍ଯ୍ୟକ୍ରମରୁ କୌଣସି ଶୁଭ ପରିଣାମ ମିଳିବା ସମ୍ଭବ ନୁହେଁ ।

ଜନମତ ସଂଗ୍ରହ କରିବା ଦାୟିତ୍ୱ ପଞ୍ଚାୟତିରାଜ ପଦ୍ଧତିରେ ହେବା ଉଚିତ ଏବଂ ଜନମତ ବିଷୟରେ ଜଳସମ୍ପଦ ବିଭାଗର ସ୍ୱଚ୍ଛତା ବଜାୟ ରହିବା ଉଚିତ ।

## ୮. ଭୂତଳ ଜଳର ବିକାଶ :

**୮.୧. ସମୟ ସମୟରେ ଉଭୟ ଅଳ୍ପ ଗଭୀର ଓ ଅତି ଗଭୀର ଜଳ ଉତ୍ସଗୁଡ଼ିକର କ୍ଷମତାକୁ ବୈଜ୍ଞାନିକ ଉପାୟରେ ମପାଯିବା ଆବଶ୍ୟକ, ଏବଂ ଜଳର ମାନ ଓ ଆର୍ଥିକ ଯୌକ୍ତିକତା ବିଷୟରେ ସ୍ପଷ୍ଟ ଧାରଣା କରିବା ଦରକାର ।**

**ସ୍ପଷ୍ଟୀକରଣ :**

ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଜଳସେଚନ ବ୍ୟବସ୍ଥା କରାଗଲେ ତଦ୍ୱାରା ସେହି ଅଞ୍ଚଳର ଭୂତଳ ଜଳର ଉଭୟ ଗୁଣ ଓ ପରିମାଣ ବହୁଳ ଭାବେ ରିଚାର୍ଜିଂ ହୋଇପାରିବ । ମାନ ନିରୂପଣ ଉପରେ ଏକ ବିଶ୍ୱାସଯୋଗ୍ୟ ବ୍ୟବସ୍ଥା କରାଯାଇ ଫଳାଫଳ ସର୍ବସାଧାରଣ ଗୋଚରାର୍ଥେ ଜଣାଇବା ଆବଶ୍ୟକ । ପିଇବା ପାଣି ସକାଶେ ଆବଶ୍ୟକମତେ କୂଅ ବଦଳରେ ନଳକୂପ ବସାଯିବା ଦରକାର । ଜଳସେଚନ ବେଳେ ପାଖାପାଖି କୂଅମାନଙ୍କରେ ବେଶୀ ପାଣି ଥାଏ । ପମ୍ପ ସାହାଯ୍ୟରେ ଅଧିକ ଜାଗାକୁ ପାଣି ମଡାଇବା ପାଇଁ ବ୍ୟବସ୍ଥା କରାଯିବା ଉଚିତ । ଏହା ଫଳରେ ପାଣି ଜମିବା କମିଯିବ ବିଶେଷ କରି ତଳ ମୁଣ୍ଡରେ ଥିବା କୂଅମାନଙ୍କରେ ଏହି ଅବସ୍ଥା ସୃଷ୍ଟି ହୋଇଥାଏ ।

**୮.୨. କୃତ୍ରିମ ଉପାୟରେ ଭୂତଳ ଜଳ ବଢ଼ାଇବା ଓ ବର୍ଷାପାଣି ଅମଳ ଯଥା, ଛାତ ଉପରେ ବର୍ଷା ପାଣିକୁ ଅମଳ କରିବା ଉପାୟମାନ ହେବା ଉଚିତ । ଏହାଦ୍ୱାରା ଜଳ ସମ୍ପଦର ଉତ୍ସ ଓ ମାନ ବଢ଼ିବ ।**

**ସ୍ପଷ୍ଟୀକରଣ :**

ପରିବର୍ତ୍ତନ ଦରକାର ନାହିଁ ।

**୮.୩. ଭୂତଳ ଜଳ ବ୍ୟବହାରର ମାତ୍ରା ଉପରେ ନିୟନ୍ତ୍ରଣ ରହିବା ଉଚିତ । ଦରକାରରୁ ଅଧିକ ଉପଯୋଗ କଲେ ପରିବେଶ ସନ୍ତୁଳନରେ ଅସୁବିଧା ହୁଏ ।**

**ସ୍ପଷ୍ଟୀକରଣ :**

ଏହା ଦରକାର, ମାତ୍ର ଏହାର ଆବଶ୍ୟକତା ବର୍ତ୍ତମାନ ପର୍ଯ୍ୟନ୍ତ ଅନୁଭୂତ ହୋଇନାହିଁ । ଏଥିପାଇଁ ନିର୍ଦ୍ଦିଷ୍ଟ ଆଇନ୍ ରହିବା ଉଚିତ ଏବଂ ଏହାକୁ କାର୍ଯ୍ୟକାରୀ କରିବା ପ୍ରକ୍ରିୟା ପ୍ରାଞ୍ଜଳ ଭାବରେ ବୁଝାଇ ଦିଆଯିବା ଉଚିତ ନଚେତ୍ ଭଲ ଉଦ୍ଦେଶ୍ୟରେ ମଧ୍ୟ ଭୂତଳ ଜଳ ବ୍ୟବହାର କରିବା କଷ୍ଟକର ହୋଇପଡିବ ।

**୮.୪. ଭୂତଳ ଓ ମାଟି ଉପର ଜଳର ଐକୀକୃତ ବ୍ୟବହାର ଓ ପୁର୍ନବ୍ୟବହାର ବିଷୟ ଉପରେ ପରିକଳ୍ପନା ପର୍ଯ୍ୟାୟରୁ ଚିନ୍ତା କରାଯିବା ଉଚିତ ।**

**ସ୍ପଷ୍ଟୀକରଣ :**

ଓଡ଼ିଶାରେ ପାହାଡିଆ ପରିବେଶ ଯୋଗୁଁ ବେଶୀ ଜଳଉତ୍ସ ଦେଖିବାକୁ ମିଳେନାହିଁ । ଉପକୂଳ ଅଞ୍ଚଳରେ ଏଗୁଡିକ ବେଶୀ । କିନ୍ତୁ ସମୁଦ୍ର ପାଖାପାଖି ରହିବା ହେତୁ ଏହାର ପାଣି ଲୁଣିଆ । ତେଣୁ ଭୂତଳ ଜଳର ବ୍ୟବହାର ସହିତ ମାଟି ଉପର ଜଳର ବ୍ୟବହାର ଏକାଠି କରିବା କଷ୍ଟକର । ନିଷ୍କାସୀ ନାଳରେ ପଛୁଆ ପ୍ରବାହ ଫଳରେ ଜଳ ଉପର ମୁଣ୍ଡକୁ ଠେଲି

ହୋଇଥାଏ, ଯାହା ଫଳରେ କେନାଲରେ ପାଣି ଝରିଥାଏ ଓ ଧାନ ଫସଲରେ ଦରକାରରୁ ଅଧିକ ଜଳସେଚନ ହୋଇଥାଏ । ଜଳସେଚନରେ ଏହା ଉପର ମୁଣ୍ଡରେ ହୋଇଥାଏ, କିନ୍ତୁ ତଳ ମୁଣ୍ଡ ଶୁଖିଲା ପଡିଥାଏ । ତେଣୁ ନିଷ୍କାସିତ ପାଣିର ପୁର୍ନବ୍ୟବହାର ସକାଶେ ଏଠାରେ ଏକ ବଡ଼ ସୁଯୋଗ ସୃଷ୍ଟି ହୁଏ ।

ଏହାର ବୈଷୟିକ ଜ୍ଞାନକୌଶଳ ଉପଲବ୍ଧ ଅଛି କିନ୍ତୁ ଜଳ ପ୍ରକଳ୍ପର ନିଜ କଳ୍ପନାରେ ଏହାକୁ ଏ ପର୍ଯ୍ୟନ୍ତ ସନ୍ନିବେଶିତ କରାଯାଇନାହିଁ । ଏଥିପାଇଁ ଜଳନୀତିରେ ଏହି ପରିପ୍ରେକ୍ଷୀରେ ପରିବର୍ତ୍ତନ କରାଯାଇଛି ।

୮.୫. ଭୂତଳ ଜଳର ଅଧିକ ଉପଯୋଗ ହେଲେ ଉପକୂଳ ଅଞ୍ଚଳରେ ଲୁଣିପାଣି ଜଳ ଉତ୍ସକୁ ପ୍ରବେଶ କରିବାର ସମ୍ଭାବନା ଥିବାରୁ ଏ ଦିଗରେ ଦୃଷ୍ଟି ଦେବା ଆବଶ୍ୟକ ।

## ୯. ପାନୀୟ ଜଳ

୯.୧. ଉଭୟ ଗାଁ ଓ ସହରର ସମସ୍ତ ଜନସାଧାରଣଙ୍କୁ ବିଶୁଦ୍ଧ ପିଇବା ପାଣି ଆବଶ୍ୟକତା ମତେ ଯୋଗାଇ ଦିଆଯିବା ଉଚିତ । ଯେଉଁଠାରେ ପିଇବା ପାଣି ଯୋଗାଇବା ପାଇଁ ବିକଳ୍ପ ବ୍ୟବସ୍ଥା ନାହିଁ ସେଠାରେ ଜଳସେଚନ ଏବଂ ବହୁମୁଖୀ ପ୍ରକଳ୍ପ ଗୁଡିକ ଏହି ସୁବିଧା ଯୋଗାଇ ଦେବାକୁ ସେମାନଙ୍କର କାର୍ଯ୍ୟକ୍ରମର ଏକ ଅଂଶ ରୂପେ ଗ୍ରହଣ କରିବେ । ଏକ ସୁବ୍ୟବସ୍ଥିତ ରସାୟନଶାଳାରେ ଏହି ପିଇବା ପାଣିର ମାନକୁ ପରୀକ୍ଷା କରାଯାଇ ଯୋଗାଇ ଦିଆଯିବା ଉଚିତ । ଏପରିକି ଆବଶ୍ୟକ ପଡିଲେ ଜଳସେଚନ ବା ବିଦ୍ୟୁତ୍ ଉତ୍ପାଦନରୁ ମିଳୁଥିବା ଲାଭକୁ ଏଡାଇ ଦିଆଯାଇ, ପିଇବା ପାଣି ଯୋଗାଣକୁ ଅଗ୍ରାଧିକାର ଦିଆଯିବ ।

ସ୍ପଷ୍ଟୀକରଣ :

ବିଶୁଦ୍ଧ ପିଇବା ପାଣି ଯୋଗାଇ ଦେବା ଚିନ୍ତାଧାରାଟି ଉତ୍ତମ ଓ ଗ୍ରହଣୀୟ । ଏହି କାର୍ଯ୍ୟଟିକୁ ଜଳସେଚନ ପ୍ରକଳ୍ପ ଗୁଡିକ ସୁନ୍ଦର ଭାବେ ତୁଲାଇ ପାରିବେ । କିନ୍ତୁ ସବୁ ସମୟରେ ଯେପରି ପାଣିର ଗୁଣ ବଜାୟ ରହିବ ତାହା ଯେପରି ଭୁଲ ନହୁଏ । ଏପରି ଦେଖାଯାଇଛି ଯେ ପାଣିର ନିର୍ଦ୍ଧାରିତ ମାନ ନିର୍ଣ୍ଣୟ କରିବା ପାଇଁ ରସାୟନଶାଳାର ସୁବିଧା ଆବଶ୍ୟକମତେ ଉପଲବ୍ଧ ହୋଇନଥାଏ । ତେଣୁ ଏହି ବିଚାରଟି ପ୍ରତି ଯଥାର୍ଥ ଦୃଷ୍ଟି ଦିଆଯିବା ଉଚିତ ।

## ୧୦. ଜଳସେଚନ:

୧୦.୧ ଜଳସେଚନ ବିଷୟରେ ଯୋଜନା କଲାବେଳେ ତାହା ଏକକ ପ୍ରକଳ୍ପ ହେଉ କିମ୍ବା ସମଗ୍ର ଅବବାହିକା ଅଞ୍ଚଳକୁ ନେଇ ହେଉ, ଜମିକୁ ଜଳ ସେଚନ କରି ପାରିବା କ୍ଷମତାକୁ ବିଚାରକୁ ନିଆଯିବା ଉଚିତ । କାରଣ ଭୂସ୍ଥିତିରେ ବିଭିନ୍ନତା ରହିଥିବାରୁ ଜମିଗୁଡିକ କେଉଁଠି ଗଡାଣିଆ ତ କେଉଁଠି ପ୍ରଶସ୍ତ; ପୁଣି କେତେକ ସ୍ଥାନରେ ଉଚ୍ଚ ଜଳ ସ୍ତର କିମ୍ବା ମାଟିର ଘନତା କମ ଥିବାରୁ ପାଣି ମାଡିବାରେ ବାଧାର କାରଣ ଥାଏ । ପାଣିର ସମସ୍ତ ଉପଲବ୍ଧ ଉତ୍ସଗୁଡିକ ଯଥା ଭୂତଳ ଜଳ, ନାଳମାନଙ୍କର ପ୍ରତ୍ୟାବର୍ତ୍ତୀ ପ୍ରବାହ ଏବଂ ଜଳସେଚନର ଯଥାର୍ଥ ଜ୍ଞାନ କୌଶଳ, ଯଥା ବିଭିନ୍ନ ଜମିରେ ବିଭିନ୍ନ ପ୍ରକାର ମାଟିର ଆବଶ୍ୟକ ଆର୍ଦ୍ରତାକୁ ବଜାୟ ରଖିବାକୁ ହେଲେ ଜଳ ସେଚନ ବେଳେ ରହି ରହି ପାଣି ଯୋଗାଇ ଯଥାର୍ଥ ସମୟ ବ୍ୟବଧାନ ରଖିବାକୁ ହେବ । ଏହାଦ୍ୱାରା ଜଳସେଚନ କ୍ଷେତ୍ରରେ ହେଉଥିବା ଖର୍ଚ୍ଚ ଓ ତହିଁରୁ ମିଳୁଥିବା ସଫଳତାରେ ସମ୍ଭାବ୍ୟ ସ୍ୱାଧୀନ ବିଚାର ରହିବ ଏବଂ ଏହାଦ୍ୱାରା ମଧ୍ୟ ପାଣିକୁ ବ୍ୟବହାର କରିବାର ଦକ୍ଷତାକୁ ଅଧିକ ବଢ଼ାଯାଇପାରିବ । ଶସ୍ୟ ଏବଂ ଜଳସେଚନର ଆବଶ୍ୟକତା, ଏହା ଦ୍ୱାରା ବହୁତ ଚାଷୀ ପରିବାର ଲାଭବାନ ହୋଇପାରିବେ । ଏହାର ଲକ୍ଷ୍ୟ ଉତ୍ପାଦନ କ୍ଷମତାକୁ ଯଥାସମ୍ଭବ ଅଧିକ ବୃଦ୍ଧି କରିବା ।

**ସ୍ପଷ୍ଟୀକରଣ :**

ଏହି ନୀତିଟିରେ ଉତ୍ତମ ଜଳସେଚନ ବ୍ୟବସ୍ଥା ପାଇଁ ଆବଶ୍ୟକ କାରଣଗୁଡିକୁ ବର୍ଣ୍ଣନା କରାଯାଇଥିଲେ ମଧ୍ୟ ଏହା ଜଳସେଚନ ବିଭାଗ ଦ୍ୱାରା ହୋଇଥିବା ବିଭିନ୍ନ ପ୍ରକଳ୍ପଗୁଡିକର ଅଭିଜ୍ଞତାକୁ କୌଣସି ନୂଆ ଦିଗ୍‌ଦର୍ଶନ ଦେବାରେ ବିଫଳ ହୋଇଛି । କାରଣ ବିଗତ ଚାଳିଶ ବର୍ଷ ମଧ୍ୟରେ ଏହି ବିଭାଗରେ ଘଟିଥିବା ତ୍ରୁଟି ଗୁଡିକର ସମାଧାନ ପାଇଁ ଆବଶ୍ୟକତା ଦିଆଯିବା ବିଷୟରେ କିଛି ଉଲ୍ଲେଖ ନାହିଁ । ବର୍ତ୍ତମାନର ଏକ ପ୍ରକଳ୍ପ ଗତ ଚାଳିଶ ବର୍ଷ ତଳର ଏକ ପ୍ରକଳ୍ପ ପରି ଅପାରଗ ଅଟେ । ଏହି ଦୃଷ୍ଟିରୁ ଏହି ନୀତିଟିରେ ତ୍ରୁଟିପୂର୍ଣ୍ଣ ପଦ୍ଧତି ସୁଧାରିବା ଗୁଡିକୁ ସୁଧାରିବା ପାଇଁ ଉଚିତ ମାର୍ଗଦର୍ଶନ ଦେବାର ଆବଶ୍ୟକତା ରହିଛି ଯାହାଦ୍ୱାରା ସେମାନେ ପ୍ରକଳ୍ପଟିର ସଫଳତା ପାଇଁ ଯଥାର୍ଥ ପଦକ୍ଷେପ ନେଇପାରିବେ ।

ଉଦାହରଣ ସ୍ୱରୂପ, ସମ୍ଭାବ୍ୟ ଖର୍ଚ୍ଚ ଓ ଆଦାୟ କ୍ଷେତ୍ରରେ ଯେଉଁ ସ୍ୱାଧୀନ ବିଚାର ରହିଛି ସେ କଥା ବିଚାରକୁ ନିଆଯାଉ । ଗୋଟିଏ ପ୍ରକଳ୍ପ ସାଧାରଣତଃ ଭୂତଳ ଜଳ ଓ ଭୂପୃଷ୍ଠସ୍ଥ ଜଳକୁ ମିଳିତ ଭାବେ ବ୍ୟବହାର କରିବାକୁ ବିଚାର କରିଥାଏ । ଯେଉଁ ସେଚାଞ୍ଚଳରେ ଭୂତଳ ଜଳ ସୀମିତତା ଅଥଚ ନିଷ୍କାସନ ନାଳିରେ ପ୍ରତ୍ୟାବର୍ତ୍ତୀ ଜଳ ପ୍ରର୍ଯ୍ୟାପ୍ତ ପରିମାଣରେ ଥାଏ ସେଠାରେ ଏପରି ଜଳର ବ୍ୟବହାର ବିଚାରକୁ ନିଆଯିବା ଉଚିତ । ବ୍ୟବହାରକୁ ମଧ୍ୟ ଏଥିରେ ବିଚାରକୁ ନିଆଯାଇନାହିଁ । ସେହିପରି ବର୍ତ୍ତମାନ ସମୟରେ ନଦୀରେ ହେଉଥିବା ଶୀତକାଳୀନ ସ୍ୱଳ୍ପ ଜଳପ୍ରବାହ କଥାର ଉଲ୍ଲେଖ ନାହିଁ । ନଦୀର ସଂଗ୍ରାହୀକା ଅଞ୍ଚଳରେ ବିଭିନ୍ନ କାର୍ଯ୍ୟକ୍ରମ ଦ୍ୱାରା ଏହି ସମ୍ଭାବନାକୁ ଯେ ବଢ଼ାଯାଇପାରେ ସେ ବିଷୟରେ କିଛି ଉଲ୍ଲେଖ ନାହିଁ ।

ସେହିପରି ପାଣିର ବ୍ୟବହାର କ୍ଷମତାକୁ ବୃଦ୍ଧି କରିବା ଦିଗରେ ସେଚଜଳର ବଣ୍ଟନକ୍ରମର ଯେଉଁ ଲାଭଦାୟକ ଭୂମିକା ରହିଛି ତାହାକୁ ମୂଲ୍ୟାୟନ କରାଯାଇନାହିଁ । ଜଳସେଚନର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଲାବେଳେ ଶସ୍ୟ ଉତ୍ପାଦନର ଅଭିବୃଦ୍ଧିର ପ୍ରାଥମିକତା କଥା ଚିନ୍ତା କରାଯାଇନାହିଁ । ତାହା ହେଉଛି ଜଳବଣ୍ଟନ ପଦ୍ଧତିର ଆଉ ଏକ କାର୍ଯ୍ୟ ।

**୧୦.୨. କ୍ଷୁଦ୍ର ଜଳ ଅମଳ କାର୍ଯ୍ୟକ୍ରମର ତଥ୍ୟକୁ ବ୍ୟବହାର କରି ଉପଯୁକ୍ତ ଅଧିକାରୀଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିବା ଜଳ, ଜମିର ସମ୍ମିଳିତ ବ୍ୟବହାର ସମ୍ବନ୍ଧୀୟ ନୀତି ଅନୁଯାୟୀ ଓଡ଼ିଶା ସରକାର ଏକ ବହୁ ବିଭାଗୀୟ ଜମି, ଜଳ ବ୍ୟବହାର ନିମିତ୍ତ ଯୋଜନା କରିବା ଉଚିତ । ସେଚ ଅଞ୍ଚଳରେ କାମ କରୁଥିବା ଜମିହୀନ ଲୋକମାନେ ଯେଉଁମାନେ ରିହାତି ପାଇବାକୁ ହକ୍‌ଦାର ସେମାନେ ଉପକୃତ ହେଲା ଭଳି ସବୁ ଉପାୟ ଏଥିରେ ରଖାଯିବା ଦରକାର ।**

**ସ୍ପଷ୍ଟୀକରଣ :**

ଜମିର ବ୍ୟବହାର ପାଇଁ ବହୁ ସ୍ତରୀୟ ଯୋଜନା କରିବା ସହଜ ଅଟେ କିନ୍ତୁ ବାସ୍ତବ କ୍ଷେତ୍ରରେ ଏହି ବୋଝକୁ ସମ୍ଭାଳିବା ବଡ଼ କଠିନ, କାରଣ ବିଭିନ୍ନ କ୍ଷେତ୍ରରେ ବିଶେଷଜ୍ଞମାନଙ୍କ ମଧ୍ୟରେ ମେଳର ଅଭାବ ହେତୁ ସେହି ବିଭାଗଗୁଡିକରେ ସର୍ବଶ୍ରେଷ୍ଠ ସୁଯୋଗ ଗୁଡିକର ଉପଯୁକ୍ତ ମୂଲ୍ୟାଙ୍କନ ହୋଇପାରୁନାହିଁ । ଏହି କ୍ଷେତ୍ରରେ ରହିଥିବା ସଂଭାବ୍ୟ ବିଚାର ଗୁଡିକ ହେଲା-

୧) ସାଧାରଣତଃ ଜମି ମାଲିକମାନେ ଜଳସେଚନରୁ ଲାଭ ଉଠାଇଥାନ୍ତି କିନ୍ତୁ ସମାଜରେ ଯେ ଅନେକ ଜମିହୀନ ଲୋକ ଅଛନ୍ତି (ଯେଉଁମାନଙ୍କୁ କୃଷି ଶ୍ରମିକ କହନ୍ତି) ଯେଉଁମାନଙ୍କ ବିନା ଚାଷ କେବେ ସମ୍ଭବ ନୁହେଁ ସେମାନଙ୍କ କଥା କେହି ଭାବନ୍ତି ନାହିଁ । ତେଣୁ ଜଳସେଚନ ପାଇଁ ଯୋଜନା କରାଯିବାବେଳେ, ପ୍ରୋଥିରୁ ଏଇଭଳିଆ ଲୋକେ ଲାଭବାନ ହେଲା ଭଳି ବ୍ୟବସ୍ଥା ରହିବା ଦରକାର ।

୨) ଜଳ ସଂଗ୍ରହାଞ୍ଚଳରେ ବିଶେଷ ଉନ୍ନୟନମୂଳକ କାମ କରାଗଲେ ତାହା ପ୍ରକଳ୍ପଟିକୁ ମଧ୍ୟ ବେଶ ଉପକୃତ କରିପାରିବା ସହିତ ଶୀତଦିନିଆ ଜଳ ପ୍ରବାହକୁ ପରିପୁଷ୍ଟ କରିବ । ଏପରି କାର୍ଯ୍ୟକ୍ରମକୁ ଏକ ସମ୍ଭାବନା ରୂପେ ଏଥିରେ ବିଚାର କରାଯାଇନାହିଁ ।

୩) ଯଦିଓ ପ୍ରକଳ୍ପଟି ସଘନ ଚାଷ ଦ୍ୱାରା ଅର୍ଥନୈତିକ ଅଭିବୃଦ୍ଧି ହାସଲ କରିବାକୁ ଯୋଜନା କରିଥାଏ , ପ୍ରକୃତ ପକ୍ଷେ କେଉଁ ବିଷୟ ଗୁଡ଼ିକ ପ୍ରତି ଧାନଦେଲେ ସଘନ ଚାଷ ହୋଇପାରିବ ସେ ବିଷୟରେ ଚିନ୍ତା କରିବାକୁ ଭୁଲିଯାଏ ।

୧୦.୩. ଜଳସେଚନ ପ୍ରକ୍ରିୟାରେ ପାଣି ବାଣ୍ଟିବା ବେଳେ କେତୋଟି କଥା ପ୍ରତି ନଜର ଦେବାକୁ ହେବ, ଯେପରିକି ଏହାଦ୍ୱାରା ଉଚ ତଥା ମଝିଆ କିସମ ଜମିରେ ଧାନ ଚାଷ ହେଲା ଭଳି ମାଟିରେ ଆର୍ଦ୍ରତା ରକ୍ଷା କରାଯାଇ ପାରିବା ସହିତ ସାମାଜିକ ନ୍ୟାୟ ଓ ସମାନତା ମଧ ପ୍ରତିଷ୍ଠା କରାଯାଇପାରିବ । କେନାଲର ଆରମ୍ଭ ମୁଣ୍ଡ ଓ ଶେଷ ଭାଗରେ ଥିବା ଜମିକୁ ମିଳୁଥିବା ପାଣିର ପରିମାଣରେ ଥିବା ପାର୍ଥକ୍ୟ ଏବଂ ବୃହତ୍ ଓ କ୍ଷୁଦ୍ର ଚାଷୀ ମଧ୍ୟରେ ରହିଥିବା ଚାଷଜମିର ପରିମାଣରେ ଥିବା ପାର୍ଥକ୍ୟ ଯେଉଁ ପାଣି ବାଣ୍ଟିବାରେ ଅନେକ ସମୟରେ ସମସ୍ୟା ଉପୁଜିଥାଏ । ତେଣୁ ଏହି ସମସ୍ୟାକୁ ଉପସ୍ଥିତ ସ୍ଥାନରେ ଉପଲବ୍ଧ ପାଣିର ମାତ୍ରା ଓ ଜମିର ପରିମାଣ ଉପରେ ଆବଶ୍ୟକତାନୁଯାୟୀ ନିର୍ଦ୍ଦିଷ୍ଟ ମାତ୍ରାର ଟିକସ୍ ଧାର୍ଯ୍ୟ କରି ସମାଧାନ କରାଯାଇପାରିବ । ସହଭାଗୀ ଜଳସେଚନ ପରିଚାଳନା ବ୍ୟବସ୍ଥାକୁ ପ୍ରୋତ୍ସାହିତ କରାଯିବା ଆବଶ୍ୟକ, ଫଳରେ ପାଣିର ନଷ୍ଟ ହେବାକୁ ଯଥାସାଧ କମାଇ ଦିଆଯାଇପାରିବା ସହିତ ଉପରୋକ୍ତ ଲକ୍ଷ୍ୟ ପୂରଣ କରାଯାଇପାରିବ ।

**ସ୍ପଷ୍ଟୀକରଣ :**

ପାଣି ଯୋଗାଣରେ ମୂଳ ସମସ୍ୟା ହେଲା କେନାଲର ଉପର ଓ ତଳ ମୁଣ୍ଡରେ ମିଳୁଥିବା ପାଣିର ପରିମାଣରେ ଥିବା ପାର୍ଥକ୍ୟ । ଏ ନେଇ ଜଳସେଚନ ବିଭାଗର ଦୃଷ୍ଟିକୋଣ ହେଉଛି ଯେ ଉପରମୁଣ୍ଡର ଲୋକମାନେ ଅନୈତିକ ଭାବେ ନିଜ ଭାଗ ଠାରୁ ଅଧିକ ପାଣି ନଷ୍ଟ କରିବା ଫଳରେ ତଳ ମୁଣ୍ଡରେ ଏହାର ଅଭାବ ଅନୁଭୂତ ହୋଇଥାଏ । ଏହା ବ୍ୟତୀତ ସେମାନଙ୍କ ବିଭାଗରେ ସାଧାରଣତଃ ଆଉ କୌଣସି ତ୍ରୁଟି ନାହିଁ ବୋଲି ସେମାନେ ମତ ଦିଅନ୍ତି । ଅନ୍ୟପକ୍ଷରେ ଲୋକମାନଙ୍କର ଯୁକ୍ତି ଯେ ଆବଶ୍ୟକତା ଠାରୁ ଅଧିକପାଣି (ନିଜ ଭାଗ ପାଇବା ସହିତ କେନାଲରୁ କ୍ଷରିତ ହୋଇ ) ଆସି ସେମାନଙ୍କ ଜମିକୁ ଅତ୍ୟଧିକ ଆର୍ଦ୍ର କରୁଥିବାରୁ ସେମାନେ ସବୁ କିସମ ଜମିରେ ଧାନ ମିଳୁଥିବାରୁ ସେମାନେ ବ୍ୟବହାର କରିବା ପାଇଁ ବାଧ ହୁଅନ୍ତି । ଜଳ ସମ୍ପଳ ବିଭାଗ ଏହା ଜାଣିବା ଉଚିତ । ଯଦି ସେମାନେ ଏ ସମସ୍ୟାକୁ ହୃଦୟଙ୍ଗମ କରିପାରନ୍ତେ ତେବେ କେନାଲରୁ ହେଉଥିବା କ୍ଷରଣକୁ କମେଇବା ପାଇଁ ସେମାନେ ବାଟ ଖୋଜନ୍ତେ । ଫଳରେ କେନାଲର ଶେଷ ମୁଣ୍ଡରେ ଠିକ୍ ଭାବରେ ପାଣି ମିଳିପାରନ୍ତା ଏବଂ ଚାଷୀମାନେ ସରକାରୀ ଯୋଜନାନୁସାରେ ଚାଷ କରିପାରନ୍ତେ । ଏହା କିନ୍ତୁ ହୋଇପାରୁନାହିଁ । ଥରେ ମୂଳ କଥାଟିର ସମାଧାନ ହୋଇଗଲେ ଅନ୍ୟ ସମସ୍ୟାଗୁଡ଼ିକୁ ଯଥା ପାଣିର ବ୍ୟବହାର କ୍ଷମତାକୁ ବୃଦ୍ଧି କରାଯାଇ ସାମାଜିକ ନ୍ୟାୟ ଓ ସମାନତା ପ୍ରତିଷ୍ଠା ଆଦି କାମ କରାଯାଇପାରନ୍ତା ।

୧୦.୪. ଜଳସେଚନ ଦ୍ୱାରା ସୃଷ୍ଟି ହେଉଥିବା ସେଚ ସମ୍ଭାବନାର ପୂର୍ଣ୍ଣମାତ୍ରାରେ ବ୍ୟବହାର ହୋଇପାରିବା ପାଇଁ ସମ୍ମିଳିତ ଉଦ୍ୟମ କରାଯିବା ଆବଶ୍ୟକ । ଏଥି ପାଇଁ ସେଚାଞ୍ଚଳ ବିକାଶ ପ୍ରକ୍ରିୟା ଯଥା ଜଳବଣ୍ଟନ ପାଇଁ ସମୟସୂଚୀ ପ୍ରକାଶ କରିବା, ନିଷ୍କାସିତ ପାଣିର ପୁନଃ ବ୍ୟବହାର ପାଇଁ ବ୍ୟବସ୍ଥା କରିବା, ପାଣି ପଞ୍ଚାୟତ ବ୍ୟବସ୍ଥା ମାଧ୍ୟମରେ ଜଳ ନଷ୍ଟ ନ କରିବା କାର୍ଯ୍ୟଗୁଡ଼ିକୁ ପ୍ରତ୍ୟେକ ଜଳସେଚନ ପ୍ରକଳ୍ପମାନଙ୍କରେ ପ୍ରଚଳନ କରାଯିବା ଆବଶ୍ୟକ ।

**ସ୍ପଷ୍ଟୀକରଣ :**

ଜଳପ୍ରକଳ୍ପ ପ୍ରକ୍ରିୟାରେ ଯେଉଁ ସେଚସମ୍ଭାବନା ସୃଷ୍ଟି କରାଯାଇଛି ଓ ବାସ୍ତବରେ ଯେତେ ଜମିରେ ଜଳସେଚନ କରାଯାଇ ପାରୁଛି; ଏହି ଦୁଇ ପ୍ରକ୍ରିୟା ମଧ୍ୟରେ ରହୁଥିବା ପାର୍ଥକ୍ୟ ପାଇଁ ଗୋଟିଏ କଥା ମୁଖ୍ୟତଃ ଦାୟୀ । ତାହା ହେଲା ଖରାପ ଧାନ ପରେ ଧାନଛଡ଼ା ଅନ୍ୟ କିଛି ଫସଲ କରାଯାଇ ପାରୁନାହିଁ । କେନାଲରୁ କ୍ଷରିତ ଜଳର ଅତ୍ୟଧିକ ମାତ୍ରା ଢ଼ିପ ଜମିକୁ ମଧ ଖାଲ ଜମି ଭଳିଆ ଓଦା କରିଦେଉଛି ।

ଏ ପ୍ରକାର ପରିସ୍ଥିତି; ଯଥା ଧାନ ଚାଷର ପ୍ରାଧାନ୍ୟ କ୍ଷରିତ ଜଳର ପରିମାଣ କମ୍ କରିବା ଉଦ୍ଦେଶ୍ୟ ରଖି ସମୟସୂଚୀର ପ୍ରବର୍ତ୍ତନ, ଉଦ୍‌ବୃତ୍ତ ଜଳର ପୁନଃ ବ୍ୟବହାର ବ୍ୟବସ୍ଥା ଆଦି ନ କରାଯିବାରୁ ଉତ୍ପନ୍ନ ହୁଏ । ଜମିର ପାଣି ପଞ୍ଚାୟତଗୁଡ଼ିକର ସଂଗଠକଙ୍କ ଅବ୍ୟବସ୍ଥା ମଧ୍ୟ ଆଉ ଏକ କାରଣ । ଏସବୁ ଅବ୍ୟସ୍ଥା ଗୁଡ଼ିକର ପରସ୍ପର ସହିତ ଗୁନ୍ଥିହୋଇ ରହିଥିବା ଦୃଷ୍ଟିରୁ ସବୁ ବ୍ୟବସ୍ଥାର ସଂଶୋଧନ ହେବା ଆବଶ୍ୟକ । ସଂଶୋଧିତ ନୀତିର ପ୍ରସ୍ତୁତିରେ ଏହା ଗୃହୀତ କରାଯାଇଛି ।

**୧୦.୫. ଧାନ ଚାଷର ପ୍ରାଧାନ୍ୟ ହେତୁ ଯୋଗାଇ ଦିଆଯାଉଥିବା ପାଣି ବିଭିନ୍ନ ବାଟରେ ନଷ୍ଟ ହୋଇଯାଉଛି । ଜଳର ପ୍ରତ୍ୟାବର୍ତ୍ତୀ ପ୍ରବାହ ଫଳରେ ଏକ ଅଂଶ ନଷ୍ଟ ହେଉଥିବା ବେଳେ ଆଉ ଏକ ଅଂଶ ଅଗଭୀର ଭୂତଳ ମାଟି ମଧ୍ୟକୁ ଭେଦିଯାଏ । ଜଳସେଚନ ଦ୍ୱାରା ମଧୁର ପାଣିର ସର୍ବବୃହତ ଅଂଶ ବ୍ୟବହୃତ କରାଯାଇଥାଏ । ତେଣୁ ଏହାର ଲକ୍ଷ୍ୟ ହେଉଛି ଉପଯୁକ୍ତ ଚାଷ ପ୍ରଣାଳୀ ପ୍ରଚଳନ କରାଯାଇ ପାଣିର ଏକକ ପିଛା ଯଥେଷ୍ଟ ଉତ୍ପାଦନ କରିବା । ବୈଜ୍ଞାନିକ ପଦ୍ଧତିରେ ପାଣିର ବଣ୍ଟନ କରିବା ଯଥା କିଛିଦିନ ବ୍ୟବଧାନରେ ପାଣି ଯୋଗାଇବା ପ୍ରଣାଳୀ, ଜମିଗୁଡ଼ିକୁ ସରୁସରୁ ନାଳ ସାହାଯ୍ୟରେ ପାଣି ଯୋଗାଇ ବା ବୁନ୍ଦା ତଥା ସିଞ୍ଚନ ପଦ୍ଧତି ଯେଉଁଠାରେ ଯେପରି ଆବଶ୍ୟକ ସେହିଭଳି ବ୍ୟବସ୍ଥା କରାଯାଇ ଚାଷ କରିବା ବ୍ୟବସ୍ଥା କରାଯାଉ ।**

**ସ୍ପଷ୍ଟୀକରଣ :**

ବର୍ତ୍ତମାନ ଜଳସେଚନ ବ୍ୟବସ୍ଥାର କୁଶଳତା ସମ୍ପର୍କରେ ଯେଉଁ ଛବିଟି ଆମ ଆଗରେ ଅଛି, ସେ ଅନୁସାରେ ଶତକଡା ୩୫% ଭାଗ ସେଚଜଳର ମାତ୍ର ଫସଲ ଉତ୍ପାଦନ ପାଇଁ ବ୍ୟବହୃତ ହୁଏ ୬୫% ଜଳ ବିଭିନ୍ନ ଉପାୟରେ ଯଥା ବାଷ୍ପୀକରଣ ଦ୍ୱାରା (୩%), ନିଷ୍କାସନ ଦ୍ୱାରା କ୍ଷତି (୨୬%) ଏବଂ ଫସଲର ଚେର ମାଡ଼ିଥିବା ଅଂଶର ଆହୁରି ତଳକୁ ୩୫% ଚାଲିଯାଇ ନଷ୍ଟ ହୋଇଯାଏ । ଏଭଳି ଫସଲର ଯୋଗାଇ ଦିଆଯାଉଥିବା ପାଣିର ଏକକ ପିଛା ଉତ୍ପାଦନ ହ୍ରାସ ହୋଇଥାଏ । ଯଦି ଆମେ ଏହାର କାର୍ଯ୍ୟଦକ୍ଷତାକୁ ବୃଦ୍ଧି କରିବାକୁ ଚାହିଁବା ତେବେ ଏଥିପାଇଁ ଉପାୟ ମାର୍ଗ ଖୋଜିବାକୁ ହେବ । ଉଦାହରଣ ସ୍ୱରୂପ ନିଷ୍କାସିତ ହୋଇଯାଉଥିବା (୨୨%) ପାଣିର ପୁନଃବ୍ୟବହାର କରାଯାଇପାରିଲେ ଆଉ ଅଧିକ ଜମିକୁ ପାଣି ମଡା ଯାଇପାରିବ । ଏହା କେମିତି କରିବାକୁ ହେବ ତାର ବହୁ ପରୀକ୍ଷିତ ରାସ୍ତା ରହିଛି । ତେଣୁ ଜଳନୀତି ତା'ର ପ୍ରସ୍ତାବନାରେ ସେସବୁକୁ ସ୍ପଷ୍ଟ ଭାବରେ ଉଲ୍ଲେଖ କରିବା ଉଚିତ ।

**୧୦.୬. ସେଚାଞ୍ଚଳରେ ଜଳ ନିର୍ଗମନ ଯୋଜନାର ଏକ ଅଂଶ ଭାବେ ବିଜ୍ଞାନ ସମ୍ମତ ତଥା ଆୟବ୍ୟୟ ସୀମାରେଖା ଭିତରେ ଜଳମଗ୍ନ କିମ୍ବା ଖାରିଆ ଜମିଗୁଡ଼ିକୁ ଚାଷୋପଯୋଗୀ କରାଯାଉ, ଏବଂ ଏହା ପ୍ରକଳ୍ପ କାର୍ଯ୍ୟକାରିତାର ଏକ ସାମଗ୍ରିକ ଅଂଶ ହେଉ ।**

**ସ୍ପଷ୍ଟୀକରଣ :**

ସେହିପରି ରଖାଯାଉ ।

**୧୦.୭. ଜଳ ପ୍ରକଳ୍ପ ଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ଆବଶ୍ୟକ ଅର୍ଥ ଅଣଯୋଜନା ବ୍ୟୟ ଅଟକଳର ଅନ୍ତର୍ଭୁକ୍ତ ଏଥି ପାଇଁ ବରାଦ ଥିବା ଖର୍ଚ୍ଚ ଆବଶ୍ୟକ ତୁଳନାରେ ହୋଇନଥାଏ, କାରଣ ଚାଷିମାନେ ବ୍ୟବସ୍ଥିତ ପରିମାଣ ଠାରୁ ଅଧିକ ପାଣି ନେବାପାଇଁ କେନାଲର କ୍ଷୟକ୍ଷତି କରିଥାନ୍ତି । ନୂଆ ନିର୍ମାଣ କାର୍ଯ୍ୟ କରାଗଲାବେଳେ ଏହିସବୁ ସମସ୍ୟାକୁ ଅନୁଧ୍ୟାନ କରାଯିବା ସହିତ ପ୍ରକଳ୍ପ ଗୁଡ଼ିକ ଅଧିକ ସକ୍ଷମ କରି ରଖିବାର ମୁଖ୍ୟ ଦିଗଗୁଡ଼ିକ ପ୍ରତି ସମାନ ବା ଅଧିକ ଗୁରୁତ୍ୱ ଦିଆଯିବା ଉଚିତ ।**

ସ୍ପଷ୍ଟୀକରଣ :

କେବଳ ଜଳ ପ୍ରବାହର ଯୋଗୁଁ କେନାଲର କ୍ଷୟକ୍ଷତି ଘଟିବା ଏକ ସ୍ୱାଭାବିକ ଘଟଣା । ଏଥିପାଇଁ ମିଳୁଥିବା ଅର୍ଥ ଏ ପ୍ରକାର କ୍ଷୟକ୍ଷତିର ମରାମତି ପାଇଁ ଯଥେଷ୍ଟ ହେବାକଥା । କିନ୍ତୁ ଦୁର୍ଭାଗ୍ୟକୁ ପରିଚାଳନାଗତ ବ୍ୟବସ୍ଥା ଓ ଲୋକମାନଙ୍କର ବ୍ୟବହାରିକ ଅଭ୍ୟାସ ମଧ୍ୟରେ ଅମେଳ ହେତୁ କ୍ଷୟକ୍ଷତିର ପରିମାଣ ଅନେକ ବଢ଼ିଯାଏ । ବ୍ୟବସ୍ଥାପିତ ସେବା ଯେତେବେଳେ ଲୋକଙ୍କ ମନକୁ ପାଏ ନାହିଁ ଏବଂ ଜଳ ସମ୍ପଦ ବିଭାଗକୁ ବରାବର ଅଭିଯୋଗ କଲାପରେ ମଧ୍ୟ ଯେତେବେଳେ ଏଥିପ୍ରତି କେହି କର୍ଣ୍ଣପାତ କରନ୍ତି ନାହିଁ ସେତେବେଳେ ଲୋକମାନେ ଆବଶ୍ୟକ ମୁତାବକ କେନାଲରୁ ପାଣିନେବା ପାଇଁ ବାଧ୍ୟ ହୁଅନ୍ତି । ଅମେଳ ହେବାର ପରିସ୍ଥିତି ଏତେ ବେଶି ଯେ, ଉପଲବ୍ଧ ଖର୍ଚ୍ଚ ବ୍ୟବସ୍ଥା ସବୁବେଳେ ନିଅଣ୍ଟ ହୁଏ । କ୍ରମାଗତ ଭାବେ ଏପରି ହେବାଦ୍ୱାରା କେନାଲ ଗୁଡ଼ିକର ଅବସ୍ଥା ଅତିଶୟ ଖରାପ ହୋଇଯାଏ । ଜଳସମ୍ପଦ ବିଭାଗ କିନ୍ତୁ ଲୋକଙ୍କୁ ଏଥିପାଇଁ ଦୋଷୀ କରିଥାନ୍ତି । ଲୋକଙ୍କର ଆବଶ୍ୟକତାକୁ ସେମାନଙ୍କର ଖରାପ ଅଭ୍ୟାସ ବୋଲି ଅଭିହିତ କରନ୍ତି ସିନା ଏହାର ଅସଲ କାରଣକୁ ଖୋଜି ବାହାର କରିବାକୁ ତତ୍ପର ନୁହଁନ୍ତି ।

ତେଣୁ ଅଣଯୋଜନା କ୍ଷେତ୍ରରୁ ଆଉ ଅଧିକ ଅର୍ଥ ଏଥିପାଇଁ ଦାବି କରିବା ଠିକ୍ ନୁହେଁ । ନିୟମାନୁସାରେ ସେହି ଅତିରିକ୍ତ ଅର୍ଥ ବା ପାଣ୍ଠି ଯୋଜନା ଅଟକଳର ଏକ ଅଂଶ ହେବା ଦରକାର, କାରଣ ଏହାର ଅନୁମୋଦନ ପାଇଁ କୈଫିୟତ ଦେବାକୁ ହେବ । ଜଳ ସମ୍ପଦ ବିଭାଗ ଏଥିପାଇଁ ସନ୍ତୋଷମୂଳକ ଭାବେ ସ୍ପଷ୍ଟୀକରଣ ଦେବାକୁ ସମର୍ଥ ହୋଇପାରନ୍ତି ନାହିଁ, ତେଣୁ ଆବଶ୍ୟକ ଅତିରିକ୍ତ ଅର୍ଥ ପାଇପାରନ୍ତି ନାହିଁ । ଏଥିପାଇଁ ସ୍ପଷ୍ଟୀକରଣ ଦେବାକୁ ହେଲେ ସମସ୍ୟାକୁ ଅଧ୍ୟୟନ କରିବାକୁ ହେବ, ଏହାର ମୂଳକୁ ଯିବାକୁ ହେବ; ଏହାକଲେ ଯାଇ ଏକ ଯୁକ୍ତିସଂଗତ ସମାଧାନ ବାହାର କରାଯାଇପାରିବ । ଏହି ଦୃଷ୍ଟିକୋଣରୁ ନୀତିର ପୁନଃଲିଖନ କରାଯାଇପାରନ୍ତା ।

## ୧୧. ପୁର୍ନବସତି ଓ ଥଇଥାନ

**୧୧.୧.** **ଜଳ ସମ୍ପଦର ଅତ୍ୟୁତ୍ତମ ବ୍ୟବହାର ପାଇଁ ତିଆରି ହେଉଥିବା ପ୍ରକଳ୍ପ ଦ୍ୱାରା ନିଶ୍ଚିତ ଭାବେ ଅନେକ ଲୋକ ବାସଚ୍ୟୁତ ହୋଇଥାନ୍ତି ଏବଂ ଏହା ପରେ ପରେ ସେହି ଲୋକମାନଙ୍କର ପୁର୍ନବସନ ଓ ଥଇଥାନ କାର୍ଯ୍ୟ ଜରୁରୀ ହୋଇଥାଏ । ପୁର୍ନବସତି ଓ ଥଇଥାନ ପ୍ରସ୍ତାବଟିରେ ଅନ୍ୟାନ୍ୟ ଯୋଜନା ସହିତ ଲୋକମାନଙ୍କୁ ସେମାନଙ୍କର ଜମିର ଏକ ଗ୍ରହଣଯୋଗ୍ୟ ଅଂଶ ସେଚାଞ୍ଚଳର ପାଣି ମାଡୁଥିବା ଯେ କୌଣସି ସ୍ଥାନରେ ଦେବାର ବ୍ୟବସ୍ଥାକୁ ଅନ୍ତର୍ଭୁକ୍ତ କରାଯିବା ଆବଶ୍ୟକ । ଏଥି ସହିତ ଅଧିକ ଯୁକ୍ତିସଂଗତ ହେଉଛି ଯେ ଲୋକମାନଙ୍କ ସହିତ ପୁଙ୍ଖାନୁପୁଙ୍ଖ ଭାବେ ଆଳାପ, ଆଲୋଚନା କରାଯାଇ ଏହା କରାଯିବା ଉଚିତ । ପ୍ରକଳ୍ପ ଆରମ୍ଭ ପୂର୍ବରୁ ଦାୟିତ୍ୱପୂର୍ଣ୍ଣ ସହ ଯୋଜନା କରିବାର ଆବଶ୍ୟକତା ରହିଛି, ଯାହାଦ୍ୱାରା ଏକ ସମୟରେ ଉଭୟ ପ୍ରକଳ୍ପର ନିର୍ମାଣ କାମ ଓ ବାସଚ୍ୟୁତମାନଙ୍କର ଥଇଥାନ କାମ ଆଗେଇ ପାରିବ; ଏବଂ ପ୍ରକଳ୍ପ ତିଆରି ସମୟରେ ଘଟୁଥିବା ବିଳମ୍ବକୁ ଏଡାଇ ଦେଇ ସୁରୁଖୁରୁରେ ଏହା ଶେଷ ହୋଇପାରିବ ।**

ସ୍ପଷ୍ଟୀକରଣ :

ପୁର୍ନବସତି ଓ ଥଇଥାନ ନିୟମ ସବୁବେଳେ ବିବାଦୀୟ ହୋଇରହିଛି । କାରଣ ନିଜସ୍ୱ ବାସସ୍ଥାନ ହରାଇବାର ମାନସିକ ଯନ୍ତ୍ରଣା ସହିତ ସମାନ କ୍ଷତିପୂରଣ ଦେବାର ବ୍ୟବସ୍ଥା ଏହି ପ୍ୟାକେଜ୍‌ରେ ନଥାଏ । ତେଣୁ ଯାହା କ୍ଷତିପୂରଣ ଆକାରରେ ଦିଆଯାଉଛି ତାହା କିପରି ଲୋକମାନେ ଗ୍ରହଣ କରିବେ, ସେଥିପାଇଁ ସେମାନଙ୍କର ମାନସିକ-ସ୍ଥିରତା ଆଣିବାକୁ ପ୍ରୟାସ କରାଯାଇ ପାରିଲେ ସମସ୍ୟାର ସମାଧାନ ହୋଇପାରିବ । ଏହି ପ୍ୟାକେଜ୍‌ରେ ସେମାନଙ୍କ ମଧ୍ୟରେ ଆଶା ଓ ସମ୍ଭାବନା

ଜାଗ୍ରତ କଲାଭଳି ବ୍ୟବସ୍ଥା ରହିବା ଉଚିତ । ଏହି ପ୍ରସଙ୍ଗରେ ଏହା କୁହାଯାଇପାରେ ଯେ ପ୍ରତ୍ୟେକ ବାସଚ୍ୟୁତ ବ୍ୟକ୍ତିକୁ ତାର ଜମିର ପରିମାଣର ସମାନୁପାତିକ ଅଂଶ ସେଚାଞ୍ଚଳର ଯେକୌଣସି ପାଣି ମାଡୁଥିବା ସ୍ଥାନରେ ଏବଂ ସେହି ପ୍ରକଳ୍ପ ମଧ୍ୟରେ ଦିଆଯାଉ । ଏଥିସହିତ ଏହି କ୍ଷତିପୂରଣ ବ୍ୟବସ୍ଥା ବା ପ୍ୟାକେଜ୍‌ର ଯୁକ୍ତିଯୁକ୍ତତାକୁ ଲୋକଙ୍କ ସହିତ, ଆଲୋଚନା ଦ୍ୱାରା ସ୍ପଷ୍ଟ କରାଯାଉ ।

## ୧୨. ଜଳବିଦ୍ୟୁତ୍ ଉତ୍ପାଦନ :

**୧୨.୧.** ଜଳ ବିଦ୍ୟୁତ୍ ଉତ୍ପାଦନ, ଅନ୍ୟାନ୍ୟ ଉତ୍ସରୁ ଉତ୍ପନ୍ନ ବିଦ୍ୟୁତ୍ ତୁଳନାରେ ପ୍ରଦୂଷଣ ବିହୀନ ଓ କମ୍ ଖର୍ଚ୍ଚ ବିଶିଷ୍ଟ ହୋଇଥିବାରୁ, କେଉଁ ଜାଗାରେ ଜଳବିଦ୍ୟୁତ୍ ପ୍ରକଳ୍ପ କରାଯାଇପାରିବ ତାହାକୁ ଚିହ୍ନିତ କରି ଏହା ଉପରେ ଗୁରୁତ୍ୱ ଦେବା ଆବଶ୍ୟକ । କିନ୍ତୁ ଯେଉଁ ଲୋକମାନେ ନଦୀ ବନ୍ଧ ଯୋଜନାର ତଳ ଅଞ୍ଚଳରେ ବାସ କରୁଥିବେ ସେମାନଙ୍କ ପାଇଁ ନଈକୂଳିଆ ଲୋକଙ୍କ ପାଇଁ ପ୍ରଦତ୍ତ ଅଧିକାର ପ୍ରଣୟନ କରାଯିବ । ଯେଉଁ ଜାଗାରେ କ୍ଷୁଦ୍ର ଓ ଅତିକ୍ଷୁଦ୍ର ଜଳ ବିଦ୍ୟୁତ୍ ଉତ୍ପାଦନ ପ୍ରତିଷ୍ଠା ହେବା ସହ କେନାଲ ବ୍ୟବସ୍ଥା ହୋଇ ପାରିବାର ସମ୍ଭାବନା ରହିଛି ତାହାକୁ ଆବିଷ୍କାର କରାଯିବା ମଧ୍ୟ ଆବଶ୍ୟକ ।

**ସ୍ପଷ୍ଟୀକରଣ :**

ଜଳବିଦ୍ୟୁତ୍ ପ୍ରକଳ୍ପ ପ୍ରତିଷ୍ଠା ପଛରେ ଦର୍ଶାଯାଇଥିବା ଯୁକ୍ତି ଠିକ୍ ଅଟେ । କିନ୍ତୁ ଅଧିକାଂଶ ସମୟରେ ଦେଖାଯାଏ ଯେ ଯେଉଁ ଲୋକମାନେ ବନ୍ଧର ଠିକ୍ ତଳ ଅଞ୍ଚଳରୁ କିଛି ଦୂର ମଧ୍ୟରେ ବାସ କରୁଥାନ୍ତି ସେ ଅଞ୍ଚଳଠାରୁ କିଛି ଦୂରରେ ବିଦ୍ୟୁତ୍ ଉତ୍ପାଦନ ପରବର୍ତ୍ତୀ ଜଳକୁ ପୁଣି ନଦୀ ମଧ୍ୟକୁ ଛଡ଼ାଯାଏ । ଏହାଦ୍ୱାରା ଏହି ବାସିନ୍ଦାମାନେ ରାଇପେରିଆନ୍ ବା ନଈକୂଳିଆ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଅଧିକାରର ଲାଭରୁ ବଞ୍ଚିତ ହୁଅନ୍ତି ।

**୧୨.୨.** ବହୁମୁଖୀ ପ୍ରକଳ୍ପରୁ ଜଳବିଦ୍ୟୁତ୍ ଉତ୍ପାଦନ କରିବାର ଯୋଜନା ଏପରି ହେବା ଦରକାର ଯେପରି ବିଦ୍ୟୁତ୍ ଉତ୍ପାଦନ ହୋଇସାରିଥିବା ପାଣିର ଯଥା ସମ୍ଭବ ଭାବେ ଜଳସେଚନ ଓ ଅନ୍ୟ ଯେକୌଣସି ପ୍ରୟୋଜନୀୟ କାର୍ଯ୍ୟରେ ତା'ର ପୂର୍ଣ୍ଣ ମାତ୍ରାରେ ବ୍ୟବହାର ହୋଇପାରିବ ।

## ୧୩. ପରିବେଶ ବିଜ୍ଞାନ ଓ ଜଳର ମାନ :

**୧୩.୧.** ପରିବେଶକୁ ବଞ୍ଚାଇ ରଖିବା ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ନଦୀ ବନ୍ଧ ନିର୍ମାଣ ଧର୍ମତଃ ପରିବେଶ ପରିବର୍ତ୍ତନର କାରଣ ଅଟେ । ଏକ ସାମଗ୍ରିକ ନଦୀ ଅବବାହିକା ଉନ୍ନୟନ ଯୋଜନା, ଅପ୍ରତ୍ୟାଶିତ ଭାବେ ବଢ଼ି ଚାଲିଥିବା ପ୍ରତିକୂଳ ପରିବେଶଗତ ପ୍ରଭାବଗୁଡ଼ିକୁ ପ୍ରଚ୍ଛନ୍ନ ଭାବେ ଯୋଗାଇଥିବା ଶକ୍ତିକୁ ପ୍ରତିହତ କରିବାରେ ସମର୍ଥ ହୋଇଥାଏ । ତେଣୁ ନଦୀ ଅବବାହିକା ନିମନ୍ତେ ହେଉଥିବା ଯୋଜନା ଗୁଡ଼ିକୁ ପ୍ରସ୍ତୁତ କରାଯିବା ସମୟରେ ଜଳସମ୍ପଦ ପରିଷଦ ଏକ ସୁସଂଗଠିତ ବା ସୁସଂଯୋଜିତ ପରିବେଶଗତ ନିୟମ ଅବଲମ୍ବନ କରିବା ଦରକାର ।

**୧୩.୨.** ନଦୀ ଅବବାହିକା ନିମନ୍ତେ ଯୋଜନା ତିଆରି କରାଯିବାବେଳେ ଜଳାଧାର ଗୁଡ଼ିକ ଯଥା ହ୍ରଦ, ଉପହ୍ରଦ ଏବଂ ଅନ୍ୟାନ୍ୟ ଜଳଭଣ୍ଡାରଗୁଡ଼ିକ ଯେପରି ପରିବର୍ତ୍ତିତ ପରିବେଶରେ ଦୀର୍ଘକାଳ ବଞ୍ଚିରହି ପାରିବେ, ସେଥିପ୍ରତି ଗୁରୁତ୍ୱ ଦିଆଯିବା ଆବଶ୍ୟକ ।

୧୩.୩. ଉଭୟ ଭୂପୃଷ୍ଠ ଓ ଭୂତଳ ଜଳରମାନ ନିୟମିତ ଭାବେ ପରୀକ୍ଷା ନୀରିକ୍ଷା କରାଯାଇ ତାହାର ଫଳାଫଳ ଲୋକମାନଙ୍କ ଅବଗତି ନିମନ୍ତେ ଜଣାଇ ଦିଆଯିବା ଉଚିତ । ଯଦି ମାନର ଅଧୋଗତି ପରିଲକ୍ଷିତ ହୁଏ, ତେବେ ଆବଶ୍ୟକ ପଦକ୍ଷେପ ନିଆଯିବା ବିଧେୟ ।

ସ୍ପଷ୍ଟୀକରଣ :

ପ୍ରସ୍ତାବନାଟି ଗ୍ରହଣଯୋଗ୍ୟ ଅଟେ । ତଥାପି ମନେହୁଏ ପର୍ଯ୍ୟାଲୋଚନାର ଫଳାଫଳକୁ ପ୍ରକାଶ କରାଯିବା ସହିତ ମାନର ପରିମାପକ କଣ ହେବା ଉଚିତ ତାହା ସୁନିର୍ଦ୍ଦିଷ୍ଟ ହୋଇପାରିଲେ ଯୁକ୍ତିସଂଗତ ତଥା ଗ୍ରହଣୀୟ ହେବ ।

୧୩.୪. ପରିବେଶ ଏବଂ ସାମାଜିକ ଭାବ ବିଚାରକୁ ବଜାୟ ରଖିବାକୁ ହେବ, ଯାହାଫଳରେ ଚିରସ୍ରୋତା ଝରଣାଗୁଡିକରେ ଯାହାହେଲେ ମଧ୍ୟ ଜଳପ୍ରବାହକୁ ବଞ୍ଚାଇ ରଖାଯାଇପାରିବ ।

୧୩.୫. ଶିଳ୍ପ ଓ ମ୍ୟୁନିସିପାଲିଟି ଅଞ୍ଚଳମାନଙ୍କରୁ ବାହାରୁଥିବା ଆବର୍ଜନା ଗୁଡିକୁ ପ୍ରାକୃତିକ ଝରଣା ମଧ୍ୟକୁ ଛାଡିବା ପୂର୍ବରୁ ପ୍ରଥମେ ପରିଷ୍କାର କରାଯିବ ଯେପରି ତାହା ଦ୍ୱାରା କିଛି କ୍ଷୟକ୍ଷତି ନହୁଏ । କାରଣ ନଦୀ ବା ଝରଣା ଗୁଡିକରେ ପ୍ରବାହିତ ଜଳ କେବଳ ଏକ ନିର୍ଦ୍ଦିଷ୍ଟ ପରିମାଣର ଆବର୍ଜନାକୁ ମିଳାଇ ଦେଇ ପାରିବ; ତାହା ଠାରୁ ଅଧିକ ମାତ୍ରା ହେଲେ ନଦୀ ଜଳ ପ୍ରଦୂଷିତ ହୋଇଥାଏ । ତେଣୁ ନଦୀରେ ପ୍ରବାହିତ ଜଳର ପରିମାଣକୁ ପ୍ରଥମେ ନିର୍ଣ୍ଣୟ କରାଯାଇ ତାର କ୍ଷମତାନୁଯାୟୀ ଆବର୍ଜନା ତା'ମଧ୍ୟକୁ ନିଷ୍କାସିତ କରାଯିବା ଉଚିତ ।

ସ୍ପଷ୍ଟୀକରଣ :

ମତାମତ ଯାହା ହେଉନା କାହିଁକି ପ୍ରସ୍ତାବନାଟି ଯଥାର୍ଥ ଅଟେ । ଏକ ନିରାପଦ ପରିସୀମା ମଧ୍ୟରେ ଆବର୍ଜନା ଗୁଡିକୁ ପାଣିରେ ମିଳାଇ ଦେବାର କ୍ଷମତା ନଦୀର ରହିବା ଆବଶ୍ୟକ, ଏହାକୁ ବଜାୟ ରଖିବା ଉପରେ ଗୁରୁତ୍ୱ ଦିଆଯିବା ଉଚିତ ।

୧୩.୬. ଦୂଷିତ ଜଳକୁ ପରିଷ୍କାର କରିବା ପାଇଁ ଆବଶ୍ୟକ ଅର୍ଥ ପ୍ରଦୂଷକମାନଙ୍କ ଠାରୁ ପୂରଣ କରାଯାଉ; ଏଥି ନିମନ୍ତେ ଆବଶ୍ୟକ ନିୟମ କରାଯାଇ ସମ୍ପୃକ୍ତ ଅଧିକାରୀଙ୍କ କ୍ଷମତାକୁ ଅଧିକ ଦୃଢ଼ କରାଯାଉ ।

୧୩.୭. ବର୍ତ୍ତମାନ ବିଭିନ୍ନ ସ୍ଥାନରେ ଥିବା ଜଳାଶୟ ଗୁଡିକୁ ସଂରକ୍ଷିତ କରି ରଖିବାକୁ ହେବ । ଆବଶ୍ୟକ ନିୟମ କରାଯାଇ ଏହି ଜଳ ଭଣ୍ଡାରମାନଙ୍କୁ ଅନ୍ୟମାନଙ୍କର ଜବରଦଖଲରୁ ମୁକ୍ତ କରାଯିବା ସହିତ ପାଣି ପ୍ରଦୂଷଣକୁ ରୋକାଯାଇ ତାହାକୁ ବ୍ୟବହାର ଉପଯୋଗୀ କରାଯିବ ।

## ୧୪. ଆର୍ଥିକ ଏବଂ ରକ୍ଷଣାବେକ୍ଷଣ-ଦାୟିତ୍ୱ

୧୪.୧. ପାଣିର ବହୁବିଧ ବ୍ୟବହାର ପାଇଁ ଆଉ ଅଧିକ ଜଳ ଭଣ୍ଡାର ସୃଷ୍ଟି କରିବା ସହିତ ସେସବୁକୁ ନିଜର ରକ୍ଷଣାବେକ୍ଷଣର ଆର୍ଥିକ ଦାୟିତ୍ୱ ବହନ ଉପଯୋଗୀ କରିବା ଉପରେ ଗୁରୁତ୍ୱ ଦିଆଯିବା ଆବଶ୍ୟକ । ସେଥିପାଇଁ, ପାଣି ବ୍ୟବହାରକାରୀଙ୍କ ଠାରୁ ଆବଶ୍ୟକମତେ ଜଳକର ଆଦାୟ କରାଯାଇ ପ୍ରାଥମିକ ଅବସ୍ଥାରେ ଏହି ଜଳଭଣ୍ଡାରଗୁଡିକରେ ରକ୍ଷଣାବେକ୍ଷଣ ଓ କାର୍ଯ୍ୟକ୍ଷମ ହେବାପାଇଁ ଲୋଡା ଅର୍ଥକୁ ପୂରଣ କରାଯାଇପାରିବ ଏବଂ ପରବର୍ତ୍ତୀ ସମୟରେ ମୂଳଖର୍ଚ୍ଚ ମଧ୍ୟ ଭରଣା ହୋଇପାରିବ । ଏହି ଜଳକର ପରିମାଣ, ସମ୍ପୃକ୍ତ ବିଭାଗ କିଭଳି ସେବା ଯୋଗାଇଦେଉଛି ତା'ରି ଉପରେ ନିର୍ଭର କରିବ । କିନ୍ତୁ ଗରିବ ଓ ଅନୁନ୍ନତ ଶ୍ରେଣୀର ଲୋକମାନଙ୍କ ପାଇଁ ଏହି ଜଳକରରେ ରିହାତି ବ୍ୟବସ୍ଥାକୁ ସ୍ପଷ୍ଟ ଓ ସୁନିର୍ଦ୍ଧାରିତ କରାଯିବା ଆବଶ୍ୟକ ।

**ସ୍ପଷ୍ଟିକରଣ :**

ଜଳ ବଣ୍ଟନ ବ୍ୟବସ୍ଥା ଏବଂ ହିତାଧିକାରୀଙ୍କ ଏହା ଉପରେ ଆକାଂକ୍ଷା ତଥା ଆସ୍ଥା ଭିତରେ ଅନେକ ଅମେଳ ରହିଛି । ପ୍ରକଳ୍ପ ଜନିତ ବ୍ୟବସ୍ଥା ଯେଉଁ ଚିନ୍ତାଧାରା ଉପରେ ପର୍ଯ୍ୟବସିତ ଲୋକେ ସେ ଅନୁସାରେ ସେବା ପାଇ ପାରନ୍ତି ନାହିଁ । ଏ ବିଷୟରେ କହିଲେ ମଧ କର୍ତ୍ତୃପକ୍ଷ ଶୁଣିବାକୁ ବା ଉପଯୁକ୍ତ ପ୍ରତିକାର କରିବାକୁ ପ୍ରସ୍ତୁତ ନୁହନ୍ତି । ସେମାନେ ଆଶା କରନ୍ତି ଯେ ସେମାନେ ଯାହା କରୁଛନ୍ତି ତାର ବିକଳ୍ପ ନାହିଁ ଏବଂ ଲୋକେ ତାହା ଗ୍ରହଣ କରିବାକୁ ବାଧ୍ୟ ।

ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ଲୋକଙ୍କ ଆବଶ୍ୟକତା ପୂରଣ କରିବା ସରକାରଙ୍କ ଦାୟିତ୍ୱ । ସବୁ ଦିଗରୁ ଅନୁଧ୍ୟାନ ନ କରି 'ପରିବର୍ତ୍ତନ ଅସମ୍ଭବ' ବୋଲି କହିବା ସମୀଚୀନ ନୁହେଁ । ଏପରି କ୍ଷେତ୍ରରେ ଉପଭୋକ୍ତା ସେବାର ଧାର୍ଯ୍ୟ ମୂଲ୍ୟ ଦେବାବେଳେ ସବୁବେଳେ ଅସନ୍ତୁଷ୍ଟ ରହେ ।

ଏ ଭଳିଆ ପରିସ୍ଥିତିରେ ପ୍ରକଳ୍ପ ଜନିତ ପ୍ରାଥମିକ ଖର୍ଚ୍ଚ ବି ଭରଣା କରିବା ଦୁରୂହ ବ୍ୟାପାର ।

## ୧୫. ଜଳସମ୍ବଳ ପରିଚାଳନା ପାଇଁ ସମ୍ମିଳିତ ଉଦ୍ୟମ :

**୧୫.୧.** ପାଣିର ବହୁବିଧ ବ୍ୟବହାର ପାଇଁ ପରିଚାଳନା କ୍ଷେତ୍ରରେ ସହଯୋଗୀ ଦୃଷ୍ଟିଭଙ୍ଗୀ ରହିବା ଆବଶ୍ୟକ । ଏହି ପରିଚାଳନାରେ ସରକାରୀ ସଂସ୍ଥାମାନଙ୍କ ସହିତ ପାଣିର ବିଶେଷ ବ୍ୟବହାର କରୁଥିବା ବ୍ୟକ୍ତି ବିଶେଷ (ମୁଖ୍ୟତଃ କୃଷିଜୀବୀ ମହିଳାମାନେ) ଅନ୍ୟ ବ୍ୟବହାରକାରୀମାନେ ଏବଂ ବେସରକାରୀ ସଂସ୍ଥାମାନଙ୍କୁ ନିଆଯିବ । ଫଳରେ ଜଳସମ୍ବଳ ବ୍ୟବସ୍ଥା ଗୁଡ଼ିକର ଯୋଜନା, ପରିକଳ୍ପନା, ବିକାଶ ଓ ପରିଚାଳନା ବିଭିନ୍ନ ଦୃଷ୍ଟିକୋଣରୁ କରାଯାଇପାରିବ ଏବଂ ଏହା ଫଳପ୍ରଦ ଓ ନିଷ୍ପତ୍ତିମୂଳକ ହେବ । ଏହି ଉଦ୍ଦେଶ୍ୟ ପୂରଣ ପାଇଁ ବିଭିନ୍ନ ସ୍ତରରେ ଆବଶ୍ୟକ ଆଇନ୍‌ଗତ ଏବଂ ଆନୁଷ୍ଠାନିକ ପରିବର୍ତ୍ତନ କରାଯିବା ଉଚିତ । ଜଳ ବିନିଯୋଗକାରୀ ସଂଗଠନ, ସ୍ଥାନୀୟ ଅନୁଷ୍ଠାନମାନଙ୍କୁ ଯଥା ମ୍ୟୁନିସିପାଲିଟି, ଗ୍ରାମ ପଞ୍ଚାୟତମାନଙ୍କୁ, ନିର୍ଦ୍ଦିଷ୍ଟ ଭାବରେ ଜଳ ସମ୍ପର୍କିତ ସମସ୍ତ କାର୍ଯ୍ୟରେ ସାମିଲ କରାଯିବ । ଏହି ସଂରଚନା / ସାଜସରଞ୍ଜାମ ଗୁଡ଼ିକର ଉପଯୁକ୍ତ ଜାଗାମାନଙ୍କରେ ଯେପରି ନିୟମିତ ଭାବେ କାର୍ଯ୍ୟକାରୀ କରାଯାଇପାରିବ, ସେଗୁଡ଼ିକର ରକ୍ଷଣାବେକ୍ଷଣ ଏବଂ ପରିଚାଳନା କରାଯାଇପାରିବ; ସେଥିରେ ସେମାନଙ୍କର ଭୂମିକା ରହିବ । କାରଣ କାଳକ୍ରମେ ଏହାର ପରିଚାଳନା ଦାୟିତ୍ୱ ସେମାନଙ୍କୁ ଦିଆଯିବ । ପାଣି ପଞ୍ଚାୟତଗୁଡ଼ିକର କାର୍ଯ୍ୟକୁ ସମୟାନୁକ୍ରମେ ପାଣି ଯୋଗାଇବା କାର୍ଯ୍ୟସୂଚୀରେ ପରିଣତ କରାଯିବାକୁ ପ୍ରୋତ୍ସାହିତ କରାଯିବ । ଏହାଦ୍ୱାରା ଉଚ୍ଚ ଏବଂ ମଝାଳିଆ ଜମିର ଆର୍ଦ୍ରତା ରଖିହେବ, ଫଳରେ ରବି ଋତୁରେ ଧାନ ଜାଗାରେ ଅନ୍ୟ ଫସଲ ହେବାକୁ ସୁବିଧା ମିଳିବ ଏବଂ ତଦନୁଯାୟୀ ସୋଠଗୁଡ଼ିକୁ ତିଆରି କରାଯିବ ଏବଂ ସେହି ଅନୁସାରେ ଜଳସେଚନ କରାଯାଇପାରିବ ।

**ସ୍ପଷ୍ଟୀକରଣ :**

ଗତ ଚାଳିଶ ବର୍ଷ ହେଲା ଜଳସେଚନରେ ଉପୁଜୁଥିବା ସମସ୍ୟା ଯଥା, କେତେକ ଜାଗାରେ ସବୁବେଳେ ପାଣି ଜମି ରହିବା, କେନାଲର ଶେଷମୁଣ୍ଡରେ ପାଣିର ଅଭାବ, ହୋଇ ଆସୁଥିବା ଚାଷର ପରିବର୍ତ୍ତନ ଆଦି ସମସ୍ୟାଗୁଡ଼ିକୁ ସମାଧାନ ପାଇଁ ବିଭିନ୍ନ କ୍ଷେତ୍ରରେ ଉଦ୍ୟମ ହୋଇଆସୁଛି । ୧୯୭୧ ମସିହା ପୂର୍ବରୁ ପ୍ରଥମ କରି ସେଚଅଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା, ଯାହାକି ସୋଠର ତଳ ଅଞ୍ଚଳରେ ପାଣି ଯୋଗାଇବାର ବ୍ୟବସ୍ଥା କରିଥିଲା । ତିରିଶ ବର୍ଷ ଧରି ଏହି କାର୍ଯ୍ୟକ୍ରମ ଚାଲିଲା ପରେ ସୁଦ୍ଧା ସେଚକ୍ଷେତ୍ରରେ ବିଶେଷ ଉନ୍ନତି ଆଣି ପାରିଲା ନାହିଁ । ପରେ ଦେଖାଗଲା ଯେ, ଏହି ଅସଫଳତା ସମ୍ପୃକ୍ତ ଅଞ୍ଚଳରେ ମିଳୁଥିବା ପାଣିର ପରିମାଣ ସହିତ ଗୁନ୍ଥି ହୋଇ ରହିଛି । ଆହୁରି ମଧ ଦେଖାଗଲା ଯେ କେନାଲରେ ଜଳ ଯେତେ ଦୁର୍ଲଭ ହେବ, ତାହାର ବ୍ୟବହାର ସେତେ ଉନ୍ନତ ହେବ । ତେଣୁ ବ୍ୟବସ୍ଥାଟିର ପୁନରୁଦ୍ଧାର ଉପରେ ଗୁରୁତ୍ୱ ଦିଆଗଲା, ଯାହାଦ୍ୱାରା କି ନିୟନ୍ତ୍ରିତ ଭାବେ ପାଣି ଯୋଗାଇବ । କିନ୍ତୁ ଏହା ମଧ ସନ୍ତୋଷଜନକ ନଥିଲା, କାରଣ ପୁନରୁଦ୍ଧାର ପରେ ମଧ ନୂତନ ବ୍ୟବସ୍ଥାରେ କ୍ଷୟକ୍ଷତି ଲାଗି ରହିଲା ।

ତେଣୁ ପରବର୍ତ୍ତୀ ପଦକ୍ଷେପ ଥିଲା ପାଣିପଞ୍ଚାୟତ ଗଠନ କରି ଏହି ବ୍ୟବସ୍ଥାକୁ ସେମାନଙ୍କ (ବ୍ୟବହାରକାରୀଙ୍କ) ହାତକୁ ଦେଇଦେବା । ଏ କ୍ଷେତ୍ରରେ ମଧ୍ୟ କେତେକ ସମସ୍ୟା ଦେଖାଯାଇଛି । ଜଳସେଚନର ଅଂଶୀଦାରମାନେ ଯଥା ଜଳସେଚନ ଯନ୍ତ୍ରୀ, କୃଷି ସଂପ୍ରସାରଣ କର୍ମୀ ଓ କୃଷକମାନଙ୍କ ବିଚାର ତଥା ଦୃଷ୍ଟିକୋଣ ମଧ୍ୟରେ ସାମଞ୍ଜସ୍ୟତାର ଅଭାବ ଦେଖାଗଲା । ଶେଷରେ ଫଳ ଏଇଆ ହେଲା ଯେ ଯଦିଓ ଆନୁଷ୍ଠାନିକତା ରହିଛି ସେଥିରେ ଭାଗୀଦାର ମାନଙ୍କ ନିଷ୍ଠାନାହିଁ ।

ସେଥିପାଇଁ କାର୍ଯ୍ୟକରିବାର ପଦ୍ଧତିରେ କେତେକ ପରିବର୍ତ୍ତନ କରିବାର ଆବଶ୍ୟକତା ରହିଛି ବୋଲି ମନେହୁଏ । ଏଥିରେ ପ୍ରଥମ ପଦକ୍ଷେପ ହେଲା ଯେ କେନାଲ ମୁଣ୍ଡ ଅଞ୍ଚଳରେ ପାଣି କିଛି ସମୟ ବନ୍ଦ କରି ସେହି ସମୟରେ କେନାଲ ଜଳମୁଣ୍ଡକୁ ପାଣି ଯୋଗାଇବା । ଏହା କରିବା ଦ୍ୱାରା ସମସ୍ତେ ଏକାଠି କରିବାର ଏକ ଅବସର ସୃଷ୍ଟି ହେବ । ଏକାଠି ବସିବାର ଏକ ଅବସର ସୃଷ୍ଟି ହେବ । ଏକାଠି ବସିବାପରେ ଯାଇ ବ୍ୟବସ୍ଥାର ପରବର୍ତ୍ତୀ ଉନ୍ନତି ପାଇଁ କଥାବାର୍ତ୍ତା କରିବାର ସୁଯୋଗ ସୃଷ୍ଟି ହେବ । ଏଥିପାଇଁ ପ୍ରକୃଷ୍ଟ ଉପାୟଟି ହେଉଛି ଯେ ସାମୟିକ ବ୍ୟବଧାନରେ ପାଣି ଯୋଗାଇବା ପଦ୍ଧତିକୁ ଅନୁସରଣ କରାଗଲେ ପ୍ରତ୍ୟେକ ଚାଷୀ ପ୍ରତି ସପ୍ତାହରେ କିମ୍ବା ପନ୍ଦରଦିନ ଅନ୍ତରରେ ଥରେ ପାଣି ପାଇପାରିବେ । ଏହାଦ୍ୱାରା ଶେଷ ମୁଣ୍ଡର ଚାଷୀ ପାଇଁ କିଛି ପାଣି ଯୋଗାଇହେବ । ସବୁଦିନ ପାଣି ଯୋଗାଇବାର ବ୍ୟବସ୍ଥା ବନ୍ଦ ହୋଇଗଲେ ଉଚ୍ଚ ତଥା ମଧ୍ୟମ ଧରଣ ଜମିରେ ଧାନପାଇଁ ଆବଶ୍ୟକ ହେଉଥିବା ଆର୍ଦ୍ରତା ଆଉ ରହିବ ନାହିଁ । ଏହାଦ୍ୱାରା ସେ ଅନ୍ୟ ଚାଷ ପାଇଁ ମନ ଦେବ । ଲଗାତାର କେତେ ବର୍ଷ ଏପରି କରାଗଲେ ପାଣି ଯୋଗଇବାର ଏକ କାର୍ଯ୍ୟସୂଚୀ ସ୍ଥିରୀକୃତ ହୋଇଯିବ, ଫଳରେ ଏହି ପାଣି ଯୋଗାଇବା କ୍ଷେତ୍ରରେ ଉପୁଜୁଥିବା ଅସମାନତାକୁ ଦୂର କରିହେବ ।

## ୧୬. ବେସରକାରୀ ସଂସ୍ଥାଗୁଡିକର ସହଯୋଗଦାନ:

**୧୬.୧.** ଜଳସମ୍ବଳ ପ୍ରକଳ୍ପ ଗୁଡିକର ନାନାବିଧ କାର୍ଯ୍ୟକାରିତା ପାଇଁ ଏବଂ ଯୋଜନାରେ ଅଗ୍ରଗତି ତଥା ପରିଚାଳନା ପାଇଁ ଆବଶ୍ୟକ ମନେ ହେଲେ କେତେକ ସ୍ଥାନରେ ଘରୋଇ ସଂସ୍ଥାମାନଙ୍କର ଅଂଶୀଦାରିକୁ ପ୍ରୋତ୍ସାହିତ କରାଯିବା ଉଚିତ । ଘରୋଇ ସଂସ୍ଥାମାନଙ୍କର ସହଯୋଗିତା, ନୂଆ ଚିନ୍ତାଧାରାର ପ୍ରୟୋଗ କରିବାରେ, ଅତିରିକ୍ତ ଆର୍ଥିକ ସମ୍ବଳ ଯୋଗାଇବା କ୍ଷେତ୍ରରେ ଏବଂ ମିଳିତ ଭାବେ ପରିଚାଳନା ତଥା ସେବାକାର୍ଯ୍ୟରେ ଦକ୍ଷତା ବୃଦ୍ଧିରେ ଏବଂ ବ୍ୟବହାରକାରୀଙ୍କ ମଧ୍ୟରେ ଦାୟିତ୍ୱବୋଧ ବଢ଼ାଇବାରେ ସାହାଯ୍ୟ କରିପାରେ । ଜଳ ସମ୍ବଳ ଯୋଜନାର ବିଭିନ୍ନ କ୍ଷେତ୍ରରେ ଏବଂ ବିଶେଷ ପରିସ୍ଥିତିରେ ଘରୋଇ ଅନୁଷ୍ଠାନର ଖର୍ଚ୍ଚ କରିବାର ଆବଶ୍ୟକତା ଅଛି କି ନାହିଁ ତାହା ବିଚାର କରାଯାଇପାରେ । ତାହା ପ୍ରକଳ୍ପର ମାଲିକାନା ହେଉ ଅଥବା ତାହାକୁ କାର୍ଯ୍ୟକାରୀ କରାଇବା ଲିଜ୍ ଦେବା କିମ୍ୱା ଜଳ ସମ୍ବଳର ବହୁବିଧ ସଂରଚନାଗୁଡିକର ହସ୍ତାନ୍ତର କଥା ହେଉ । କୌଣସି ପରିସ୍ଥିତିରେ ଏହି ସମ୍ପଦଗୁଡିକର ମାଲିକାନାକୁ ସଂଘୀୟ ପ୍ରତିଷ୍ଠାନ ବା ଘରୋଇ ଉଦ୍ୟୋଗକୁ ଦିଆଯାଇ ନପାରେ । ଏହା ସରକାରଙ୍କ ହାତରେ ରହିବା ଉଚିତ । ଏହା ସମ୍ପୃକ୍ତ ଅଞ୍ଚଳର ଲୋକମାନଙ୍କ ହାତରେ ରହିବ ଏବଂ ସରକାର ଏହାର ଟ୍ରଷ୍ଟି ହେବେ ।

**ସ୍ପଷ୍ଟୀକରଣ :**

ଘରୋଇକରଣ ଚିନ୍ତାଧାରା ବିଭିନ୍ନ ପ୍ରକାରର ଆଶଙ୍କା ସୃଷ୍ଟି କରିପାରେ । ପ୍ରଥମଟି ହେଲା ଯେ ଯେଉଁ ପାଣିକୁ ଲୋକମାନେ କେଉଁ ଆଦିମକାଳରୁ ଅବାଧରେ ବ୍ୟବହାର କରି ଆସୁଥିଲେ ତାହା ଏକ ବିକ୍ରୟ ଯୋଗ୍ୟ ଦ୍ରବ୍ୟରେ ପରିଣତ ହୋଇଯିବ ଏବଂ ଲୋକମାନେ ତାକୁ କିଣିବାକୁ ବାଧ ହେବେ । ଦ୍ୱିତୀୟରେ, ଲୋକମାନେ ଏହା ଉପରୁ ନିଜର ଅଧିକାର ହରାଇ ବସିବେ ଏବଂ ଏହା ଘରୋଇ ଉଦ୍ୟୋଗର ନିୟନ୍ତ୍ରଣକୁ ଚାଲିଯିବା ସହିତ ଏକ ବ୍ୟବସାୟିକ ବିଷୟ ହୋଇଯିବ । ତେଣୁ, ଯଦି ଘରୋଇକରଣକୁ ସୁଯୋଗ ଦିଆଯାଏ, ତେବେ ଯେ କୌଣସି ପରିସ୍ଥିତିରେ ମଧ୍ୟ ଏହା ଉପରେ ସରକାରଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ରହିବା ଦରକାର ।

## ୧୭. ପାଣିର ଭୌଗୋଳିକ ବିଭାଗୀକରଣ:

୧୭.୧. ଅର୍ଥନୈତିକ ବିକାଶ ଏବଂ ସେଥି ନିମିତ୍ତ ହେଉଥିବା କାର୍ଯ୍ୟକ୍ରମ ଯଥା କୃଷି, ଶିଳ୍ପ ଏବଂ ନଗର ଉନ୍ନୟନ ସମ୍ବନ୍ଧୀୟ ଯୋଜନା କରାଗଲା ବେଳେ ପାଣିର ସୁଲଭତାକୁ ନେଇ ସମସ୍ୟା ଉଠିଥାଏ । ତେଣୁ ସେସବୁ ଉପରେ ଉପଯୁକ୍ତ ଦୃଷ୍ଟି ଦିଆଯିବା ଉଚିତ । ସେଥିପାଇଁ ଭୌଗୋଳିକ ଦୃଷ୍ଟିକୋଣକୁ ବିଚାରକୁ ନିଆଯାଇ ପାଣିର ଉପଲବ୍ଧି ଅନୁସାରେ ବିଭିନ୍ନ କ୍ଷେତ୍ରର ଆବଶ୍ୟକତା ପୂରଣ ଦୃଷ୍ଟିରୁ ଜଳର ବିଭାଜନ କରାଯାଉ ଏବଂ ସେହି ଅନୁସାରେ ଅର୍ଥନୈତିକ କାର୍ଯ୍ୟକ୍ରମଗୁଡିକ ନିର୍ଦ୍ଧାରିତ ଏବଂ ପରିଚାଳିତ ହେବା ଆବଶ୍ୟକ ।

**ସ୍ପଷ୍ଟିକରଣ :**

ଆବଶ୍ୟକତା ନାହିଁ ।

## ୧୮. ପାଣିର ସଂରକ୍ଷଣ

୧୮.୧. ବିଭିନ୍ନ କାର୍ଯ୍ୟପନ୍ଥା ଦ୍ୱାରା ପାଣିକୁ ସଂରକ୍ଷିତ କରି ରଖିବା ଉଚିତ । ଏହାଦ୍ୱାରା ବର୍ତ୍ତମାନ ଯେତିକି ପାଣି ଆମକୁ ମିଳୁଛି ତାହାର ପରିମାଣକୁ ବଢ଼ାଯାଇପାରିବ । ଏହି ଉପାୟଗୁଡିକ ହେଲା ଅଧିକଜଳ ମାଟି ଭିତରକୁ ପ୍ରବେଶ କରାଇବାର ବ୍ୟବସ୍ଥା ଜଳକୁ ପ୍ରଦୂଷଣ-ମୁକ୍ତ କରିବା ଏବଂ ବ୍ୟବହାରିକ କ୍ଷେତ୍ରରେ କ୍ଷତିର ପରିମାଣକୁ ସର୍ବନିମ୍ନ କରିବା । ଏଥିପାଇଁ ଜଳ ପରିବାହକଗୁଡ଼ିକୁ ଆବରଣଯୁକ୍ତ କରିବା, ବର୍ତ୍ତମାନ ବ୍ୟବସ୍ଥାଗୁଡିକୁ କଟା, ପୋଖରୀ ଆଦିର ପୁନରୁଦ୍ଧାର କରିବା ଏବଂ ପୁନଃକାର୍ଯ୍ୟକ୍ଷମ କରିବା । ଆବଶ୍ୟକ ସ୍ଥାନରେ ପରିଷ୍କୃତ ଆବର୍ଜନାଗୁଡିକର ପୁର୍ନବ୍ୟବହାର କରିବା ଏବଂ ନୂଆ କୌଶଳ ଯଥା ବୁନ୍ଦା ଏବଂ ସିଞ୍ଚନ ପ୍ରକ୍ରିୟାରେ ଜଳସେଚନ କାର୍ଯ୍ୟର ପ୍ରଚଳନ କରିବା । ଏହାର ପ୍ରଥମ ଲକ୍ଷ୍ୟ ହେଲା, ଜଳ ସଂଗ୍ରହାଞ୍ଚଳରେ ଜଳର ଅନୁପ୍ରବେଶ କ୍ଷମତାକୁ ବଢ଼ାଇବା ଏବଂ ଜଳସେଚନ ବେଳେ ଉଦ୍‌ବୃତ୍ତ ଜଳର ପରିମାଣକୁ ସର୍ବନିମ୍ନ କରିବା ପାଇଁ ନିୟମିତ ଚେଷ୍ଟା କରି ଚାଲିବା । ଏଥି ସହିତ ମୌସୁମୀ ପରବର୍ତ୍ତୀ ଋତୁରେ ଚାଷର ପଦ୍ଧତିକୁ ନିର୍ଦ୍ଧାରିତ ଯୋଜନାନୁସାରେ କରିବା ପାଇଁ ଉଦ୍ୟମ ଜାରି ରଖିବା । ଦ୍ୱିତୀୟରେ ସମୟାନ୍ତରରେ ପାଣି ଯୋଗାଇବା ସୂଚୀକୁ ପ୍ରଚଳନ କରିବା । ଯାହା ଫଳରେ କେନାଲର ଉପର ମୁଣ୍ଡରେ ପାଣିର ଅଭାବ ପଡିବ ଏବଂ ଏହାଦ୍ୱାରା ଏହି ଅଞ୍ଚଳରେ ଆଗରୁ ଅଧିକ ପାଣି ମିଳୁଥିବା ଯୋଗୁଁ ଉଚ୍ଚ ତଥା ମଝାଳିଆ ଜମିଗୁଡିକରେ ଯେପରି ପାଣି ଜମି ରହୁଥିଲା, ତାକୁ ରୋକାଯାଇପାରିବ । ତୃତୀୟ ପଦକ୍ଷେପଟି ହେଉଛି ପାରିପାର୍ଶ୍ୱିକ ସ୍ଥିତିକୁ ଚାହିଁ ବ୍ୟବସ୍ଥାର ପୁନରୁଦ୍ଧାର କରିବା, କେଉଁ ପାଣି ବହନକାରୀ ବ୍ୟବସ୍ଥାଗୁଡିକୁ ଆବରଣଯୁକ୍ତ କରାଯିବ ତାକୁ ବାଛିବା, ନିଷ୍କାସିତ ଜଳର ପୁନଃବ୍ୟବହାର ଏବଂ ଭିନ୍ନ ଭିନ୍ନ ଚାଷ ପ୍ରଣାଳୀକୁ ଉପଯୋଗୀ ହେଲା ଭଳି ବୁନ୍ଦା ଏବଂ ସିଞ୍ଚନ ପ୍ରଣାଳୀକୁ ପ୍ରଚଳନ କରିବା ।

**ସ୍ପଷ୍ଟୀକରଣ :**

ଏହା ଅତିରଞ୍ଜିତ ମନେହେଲେ ମଧ ଅସମ୍ଭବ ନୁହେଁ । ଏହି ଅଙ୍କକୁ ଆମେ ବିଶ୍ୱାସ ନ କରି ପାରିବାର କାରଣ ହେଲା ଏପରି କାର୍ଯ୍ୟ କରିବା ପାଇଁ କେବେ ପ୍ରୟାସ କରାଯାଇ ନାହିଁ । ଏବଂ ଏପରି ପ୍ରୟାସ ନ ହେବାର କାରଣ ହେଲା ଏଥିପାଇଁ କେହି କେବେ ଅର୍ଥ ବରାଦ କରିବାକୁ ଆବଶ୍ୟକ ମନେ କରିନାହାନ୍ତି ।

ସରକାରଙ୍କ ଯଦି ପ୍ରକୃତରେ ସଂପୃକ୍ତ ନୀତି ଉପରେ ଆସ୍ଥା ଓ ବିଶ୍ୱାସ ଥାଏ ତାହାହେଲେ ଏହାର ପରୀକ୍ଷା ସ୍ୱରୂପ ଯେ କୌଣସି ପ୍ରକଳ୍ପର ସଂଗ୍ରହାଞ୍ଚଳରେ ଏହାର ପରୀକ୍ଷା କରିପାରନ୍ତି ।

## ୧୯. ବନ୍ୟା ନିୟନ୍ତ୍ରଣ ଏବଂ ପରିଚାଳନା:

**୧୯.୧. ପ୍ରତ୍ୟେକ ନଦୀ ଅବବାହିକାରେ ବନ୍ୟାକୁ ନିୟନ୍ତ୍ରଣ ଏବଂ ପରିଚାଳନା କିଭଳି କରାଯାଇ ପାରିବ, ସେଥିପାଇଁ ଏକ ମାଷ୍ଟର ଯୋଜନା କରିବା ସହିତ ସେହି ଅନୁସାରେ ଭବିଷ୍ୟତ କାର୍ଯ୍ୟ ପାଇଁ ଅର୍ଥ ବରାଦ କରାଯାଉ । ଏଥିରେ ଅବାଧରେ ବହିଯାଉଥିବା ବର୍ଷାପାଣିକୁ ଅନେକ ଗୁଡିଏ ଛୋଟ ଜଳାଶୟ ଖୋଳାଯାଇ ତହିଁରେ ଅଟକାଇ ରଖିବା ବ୍ୟବସ୍ଥା ରଖାଯିବା ସହିତ ମାଟି ତଳ ଜଳସ୍ତରକୁ ଅଧିକ ସଂଜୀବିତ କରିବା ପାଇଁ ବ୍ୟବସ୍ଥା ରହୁ । ଏଥିଲାଗି ଯେବେ ଆର୍ଥିକ ଅଭାବ ପରି ସମସ୍ୟା ଉପୁଜେ ତେବେ ସ୍ୱଳ୍ପ ମିଆଦୀ ଏବଂ ଦୀର୍ଘ ମିଆଦୀ ପ୍ରକଳ୍ପ ମାନ କରିବା ପାଇଁ ପୃଥକ୍ ପୃଥକ୍ ବ୍ୟବସ୍ଥା କରାଯାଉ ।**

**ସ୍ପଷ୍ଟୀକରଣ :**

ପ୍ରସ୍ତାବନାଟି ଠିକ୍ ଅଛି, ହେଲେ ଜଳ ସମ୍ବଳ ବିଭାଗର ବିଚାର ଦୃଷ୍ଟିରେ ବନ୍ୟା ନିୟନ୍ତ୍ରଣ ଓ ପରିଚାଳନାରେ ଏକ ବଡ଼ ଦୁର୍ବଳତା ରହିଛି । ସେମାନେ ବୃହତ୍ ଜଳ ଭଣ୍ଡାରମାନ ନିର୍ମାଣ କରିବା ସପକ୍ଷରେ ମତ ଦିଅନ୍ତି । ଏହାଦ୍ୱାରା ଅତ୍ୟଧିକ ବର୍ଷା ସମୟରେ ବହି ଯାଉଥିବା ପ୍ରଚୁର ବର୍ଷାପାଣିକୁ ଅଟକାଇ ରଖାଯାଇପାରିବ, ଫଳରେ ପ୍ଲାବିତ ଅଞ୍ଚଳରେ ବନ୍ୟାର ପ୍ରକୋପକୁ କମାଇ ଦିଆଯାଇପାରିବ । କିନ୍ତୁ ସେମାନେ ଭୁଲିଯା'ନ୍ତି ଯେ ନଦୀର ଉପର ମୁଣ୍ଡରେ ଯେଉଁଠାରୁ ବର୍ଷାପାଣି ତଳକୁ ବୋହି ଆସେ, ସେହି ଅଞ୍ଚଳରେ ଯଦି ଏହାକୁ ଅଟକାଇ ରଖାଯାଇପାରନ୍ତା, ତେବେ ତଳ ଭାଗରେ ଆଉ ବୃହତ୍ ଜଳ ଭଣ୍ଡାର ତିଆରି କରାଯାଇ ଅଯଥାରେ ଅନେକ ଲୋକଙ୍କୁ ବାସହରା ହେବାକୁ ପଡନ୍ତା ନାହିଁ । ଯଦି ସେମାନେ ଏହି ପରାମର୍ଶକୁ ଗ୍ରହଣ କରି ନିଅନ୍ତେ, ତେବେ ରାଜ୍ୟ ସରକାର ଗୋଟିଏ ଗୁଳିରେ ଦୁଇଟି ଶିକାର କରିବାକୁ ସମର୍ଥ ହୁଅନ୍ତେ । ପ୍ରଥମରେ ଏହା ବଢ଼ିର ପ୍ରକୋପକୁ କମାଇ ଦେଇ ପାରନ୍ତା । ଏବଂ ଦ୍ୱିତୀୟରେ ଜଳ ବିଭାଜିକା କାର୍ଯ୍ୟକ୍ରମର ବିକାଶ କରାଯାଇ ଅନେକ ଲୋକଙ୍କ ପାଇଁ ଜୀବିକାର୍ଜନର ରାହା ମିଳି ପାରନ୍ତା । ଯଦି ଏହି ମତଟି ବନ୍ୟା ନିୟନ୍ତ୍ରଣ ପ୍ରସ୍ତାବରେ ଗୃହୀତ ହୁଅନ୍ତା, ତେବେ ଜଳ ସମ୍ବଳ ବିଭାଗର ବଜେଟ୍ ପାଇଁ ଆବଶ୍ୟକ ପଡୁଥିବା ବିପୁଳ ଆର୍ଥିକ ସମସ୍ୟାକୁ ଦୂରେଇବା ଦିଗରେ ରାଜ୍ୟ ସରକାର ଏକ ବୃହତ୍ ଅନୁଦାନ ଯୋଗାଇ ଦିଅନ୍ତେ । ଏହି କାର୍ଯ୍ୟପ୍ରଣାଳୀ ଦ୍ୱାରା ମରୁଡ଼ି ମଧ ଦୂରହେବ ତେଣୁ ଏ ବାବଦ ଅର୍ଥ ମଧ ଜଳ ସମ୍ପଦ ବିଭାଗ ଜରିଆରେ ଖର୍ଚ୍ଚ ହୁଅନ୍ତି । ଏହି ସବୁ କଥାକୁ ଆଖି ଆଗରେ ରଖି ଡିଠା ନିୟମାବଳୀର ୧୯.୧ରୁ ୧୯.୬ ପର୍ଯ୍ୟନ୍ତ ପ୍ରସ୍ତାବଗୁଡ଼ିକରେ ପରିବର୍ତ୍ତନ କରାଯାଇଛି ।

**୧୯.୨. ଅଧିକ ଦକ୍ଷତା ଓ ଦୃଢ଼ତାର ସହ ବନ୍ୟାର ପରିଚାଳନା କରିବା ପାଇଁ ଯେଉଁଠାରେ ସମ୍ଭବ ସେଠାରେ, (ଜଳ ଭଣ୍ଡାର ନିର୍ମାଣ ପ୍ରକଳ୍ପ ମାଧ୍ୟମରେ) ଯଥେଷ୍ଟ ବନ୍ୟା ଜଳ ସଂରକ୍ଷଣକାରୀ ଜଳାଶୟମାନ ନିର୍ମାଣ କରାଯିବା ଦରକାର । ସେଥିପାଇଁ ଅଳ୍ପ କେତେକ ମଧ୍ୟମ ଓ ବୃହତ୍ ଜଳଭଣ୍ଡାର ଅପେକ୍ଷା ବହୁତ ସଂଖ୍ୟକ କ୍ଷୁଦ୍ର ପ୍ରକଳ୍ପକୁ ଅଗ୍ରାଧିକାର ଦିଆଯିବା ଉଚିତ । ଅତ୍ୟଧିକ ବନ୍ୟାପ୍ରବଣ ଅଞ୍ଚଳରେ ବନ୍ୟାକୁ ନିୟନ୍ତ୍ରଣ କରିବା ପାଇଁ ଜଳଭଣ୍ଡାର ପରିଚାଳନା ନୀତିରେ ଅଧିକ ଗୁରୁତ୍ୱ ଦିଆଯିବା ଆବଶ୍ୟକ । ଏପରିକି ଏଥିପାଇଁ ଜଳଭଣ୍ଡାର ଦ୍ୱାରା ହେଉଥିବା ଜଳସେଚନ କିମ୍ବା ବିଦ୍ୟୁତ୍ ଉତ୍ପାଦନ ସୁବିଧାକୁ ମଧ ଆଡ଼େଇ ଦେବାକୁ ହେବ ।**

**ସ୍ପଷ୍ଟୀକରଣ :**

ବର୍ତ୍ତମାନ ପାଇଁ ଠିକ୍ ଅଛି । ବନ୍ୟା ନିୟନ୍ତ୍ରଣ ପରିବର୍ତ୍ତନ ଆବଶ୍ୟମ୍ଭାବୀ । କାରଣ ବନ୍ୟା ନିୟନ୍ତ୍ରଣ ପାଇଁ ଯେଉଁ ବୃହଦାକାର ଜଳାଶୟ ସୃଷ୍ଟି କରିବାର ଆବଶ୍ୟକତା ରହିଛି ସେପରି ଜାଗା ପାଇବାକୁ ହେଲେ ବ୍ୟାପକ ଅଞ୍ଚଳରୁ ଲୋକଙ୍କୁ ଉଚ୍ଛେଦ କରିବାକୁ ହେବ । ଏଥିପାଇଁ ବର୍ତ୍ତମାନର କ୍ରମବର୍ଦ୍ଧିଷ୍ଣୁ ବିରୋଧ ଏହା ସହଜରେ କରାଇ ଦେବ ନାହିଁ । ତେଣୁ ଏହି ଘଡ଼ିସନ୍ଧି ବେଳରେ ବିକଳ୍ପ ବ୍ୟବସ୍ଥା ସପକ୍ଷରେ ଆଲୋଚନା ତଥା ବିତର୍କ କରାଗଲେ ଶୀଘ୍ର ସରକାରଙ୍କ ଚିନ୍ତାଧାରାରେ ପରିବର୍ତ୍ତନ ଆସିବାର ସମ୍ଭାବନା ଅଛି ।

୧୯.୩. ଅଣ-ଆନୁଷ୍ଠାନିକ ଭାବେ ବନ୍ୟା ନିୟନ୍ତ୍ରଣ କରିବା ପାଇଁ କେତେକ ପଦକ୍ଷେପ ଉପରେ ଗୁରୁତ୍ୱ ବୃଦ୍ଧି ପାଇବା ଉଚିତ । ଏହିଗୁଡ଼ିକ ହେଲା- ବନ୍ୟା ବିଷୟରେ ଅଗ୍ରସୂଚନା ଓ ସତର୍କବାଣୀ ଦେବା, ବନ୍ୟା ମାଡ଼ିବା ଅଞ୍ଚଳଗୁଡ଼ିକୁ ଚିହ୍ନଟ କରି ରଖିବା, ବନ୍ୟାକୁ ପ୍ରତିରୋଧ କରାଯାଇ କ୍ଷତିର ମାତ୍ରାକୁ ଯଥା ସମ୍ଭବ କମ୍ କରିବା ଏବଂ ବନ୍ୟା ଲାଗି ବାର ବାର ଦିଆଯାଉଥିବା ରିଲିଫ୍ ଖର୍ଚ୍ଚକୁ କମାଇବା ।

୧୯.୪. ବଢ଼ି ଦ୍ୱାରା ହେଉଥିବା ଧନ-ଜୀବନ ନଷ୍ଟର ପରିମାଣକୁ କମାଇ ଆଣିବା, ବଢ଼ିକୁ ପ୍ରତିରୋଧ କରିବା ସହିତ ବୁଡ଼ି ଅଞ୍ଚଳରେ ଚକବନ୍ଦୀ ଏବଂ ଅର୍ଥନୈତିକ କାର୍ଯ୍ୟକ୍ରମ ପାଇଁ କଡ଼ା ନିୟମ ରହିବା ଉଚିତ ।

୧୯.୫. ବଢ଼ି ସମ୍ବନ୍ଧରେ ପୂର୍ବସୂଚନା କରୁଥିବା ପଦ୍ଧତିଗୁଡ଼ିକର ଆଧୁନିକୀକରଣ କରାଯାଉ । ବନ୍ୟାର ସଫଳ ନିୟନ୍ତ୍ରଣ ପାଇଁ ଜଳାଶୟ ମଧ୍ୟକୁ ପ୍ରବେଶ କରୁଥିବା ପାଣିର ପରିମାଣ ବିଷୟରେ ମଧ୍ୟ ଆଗୁଆ ସୂଚନା ମିଳିବା ଦରକାର ।

୧୯.୬. ବଢ଼ି ଘେରରେ ଥିବା ବିପଦପୂର୍ଣ୍ଣ ସ୍ଥାନରୁ ଲୋକମାନଙ୍କୁ ଉଚ୍ଚ ସ୍ଥାନମାନଙ୍କୁ ନିଆଯିବା ପ୍ରକ୍ରିୟାକୁ ଦକ୍ଷତାର ସହିତ ଯୁଦ୍ଧକାଳୀନ ଭିତ୍ତିରେ ଓ ସମୟ ସୁବିଧାନୁସାରେ ପରିଚାଳନା କରାଯିବା ଦରକାର ।

## ୨୦. ମୃତ୍ତିକା କ୍ଷୟ :

୨୦.୧. ଉପକୂଳ ଅଞ୍ଚଳରେ ସମୁଦ୍ର ଦ୍ୱାରା କିମ୍ବା ଅଭ୍ୟନ୍ତରରେ ନଦୀ ଦ୍ୱାରା ହେଉଥିବା ମୃତ୍ତିକା କ୍ଷୟକୁ ଉଚିତ ଲାଭ-ଅର୍ଜନକାରୀ ପଦକ୍ଷେପ ଦ୍ୱାରା କମାଇ ଦିଆଯିବା ଆବଶ୍ୟକ ।

୨୦.୨. ପରିବେଶଗତ ଓ ପରିସଂସ୍ଥା ସମ୍ବନ୍ଧୀୟ ପ୍ରଭାବ ଗୁଡ଼ିକୁ ଆଖି ଆଗରେ ରଖି କର୍ତ୍ତୃପକ୍ଷ ଉପକୂଳାଞ୍ଚଳ ପରିଚାଳନା ପାଇଁ ଏକ ବିସ୍ତୃତ ଯୋଜନା ପ୍ରସ୍ତୁତ କରିବା ଉଚିତ । ଏବଂ ସେହି ଅନୁସାରେ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକ ପରିଚାଳିତ ହେବା ଆବଶ୍ୟକ । ବାଛବିଚାର ନ ରଖି ଜୀବିକାର୍ଜନ ପାଇଁ ଯେକୌଣସି କାମ କରିବା ଉପକୂଳାଞ୍ଚଳ ଜମିକୁ ଲୁଣ୍ଠନ କରିବା କାର୍ଯ୍ୟକୁ ଉପଯୁକ୍ତ ବିଧାନ ଦ୍ୱାରା ନିୟନ୍ତ୍ରଣ କରାଯିବା ଆବଶ୍ୟକ ।

**ସ୍ପଷ୍ଟୀକରଣ :**

ଆବଶ୍ୟକତା ନାହିଁ ।

## ୨୧. ମରୁଡ଼ି ପ୍ରତିକାର ବିଧାନ :

୨୧.୧. ଓଡ଼ିଶାର ବିଭିନ୍ନ ସ୍ଥାନରେ ବୃଷ୍ଟିପାତର ଅସମାନତା ହେତୁ ରାଜ୍ୟର ଜଳବାୟୁରେ ମରୁଡ଼ି ଏକ ସବୁଦିନିଆ ବ୍ୟାପାର ଅଟେ । ତେଣୁ ପ୍ରତ୍ୟେକ ନଦୀ ଅବବାହିକାରେ ଯେଉଁଠାରେ ବର୍ଷ ବର୍ଷ ଧରି ମରୁଡ଼ି ଲାଗି ରହିଛି ସେହି ଅଞ୍ଚଳରେ ମରୁଡ଼ିର କିପରି ସଫଳ ମୁକାବିଲା କରାଯାଇପାରିବ ସେଥିପାଇଁ ଏକ ଯୋଜନା ପ୍ରସ୍ତୁତ କରିବା ଆବଶ୍ୟକ । ଏହାର ଲକ୍ଷ୍ୟ ହେଉଛି ବର୍ଷା ପାଣିକୁ ଅଯଥାରେ ନଦୀ ଗର୍ଭକୁ ବହିଯିବାକୁ ନ ଦେଇ ଗୋହି ମାଧ୍ୟମରେ ସେହି ମରୁଡ଼ି ଅଞ୍ଚଳ ଦେଇ ବୁହାଇ ନିଆଯିବା ସହିତ ସେହି ଅଞ୍ଚଳର ଭୂ-ଉପରିସ୍ଥ ଏବଂ ଭୂତଳ ଜଳ ଭଣ୍ଡାର ଗୁଡ଼ିକର ବିକାଶ କରାଯିବ । (ଏହି ଯୋଜନା ମରୁଡ଼ିପ୍ରବଣ ଅଞ୍ଚଳର ଉନ୍ନୟନ ପାଇଁ ଉଦ୍ଦିଷ୍ଟ) ।

ସ୍ପଷ୍ଟୀକରଣ :

ସାଧାରଣତଃ ଜଳ ସମ୍ପଳ ବିଭାଗ ମରୁଡି ସମସ୍ୟାର ପ୍ରତିକାର ପାଇଁ ବୃହତ୍ ଏବଂ ମଧ୍ୟମ ଧରଣର ପ୍ରକଳ୍ପ ତିଆରି କରିବା ପାଇଁ ପ୍ରସ୍ତାବ ଦେଇଥାନ୍ତି । କିନ୍ତୁ ଘଟଣାଚକ୍ରରେ ସାମାନ୍ୟତମ ଅନୁଭୂତିରୁ ମନେହୁଏ, ମରୁଡି ଦ୍ୱାରା ପ୍ରଭାବିତ ଅଞ୍ଚଳର ଆୟତନ କୌଣସି ଏକ ବା ତତୋଧିକ ପ୍ରକଳ୍ପ ଦ୍ୱାରା ନିର୍ଦ୍ଧାରିତ ସେଚ ଅଞ୍ଚଳ ଠାରୁ ବହୁ ଗୁଣରେ ଅଧିକ ଅଟେ । ତେଣୁ ମରୁଡି ପ୍ରତିକାର ବ୍ୟବସ୍ଥାଦିର ଯୋଜନାରେ ଜଳଛାୟା ପ୍ରକଳ୍ପକୁ ଅଗ୍ରାଧିକାର ଦିଆଯାଉ ଏବଂ ସ୍ୱଳ୍ପ ସଂଖ୍ୟକ ମଧ୍ୟମ ତଥା ବୃହତ୍ ଯୋଜନା ବଦଳରେ ଅନେକ ଗୁଡିଏ କ୍ଷୁଦ୍ର ପ୍ରକଳ୍ପ ଉପରେ ଗୁରୁତ୍ୱ ଦିଆଯାଉ । ବୃହତ୍ ପ୍ରକଳ୍ପ ଗୁଡିକୁ ଏହି ଯୋଜନାର ଶେଷ ଭାଗକୁ ରଖାଯାଉ । ଏଥିପାଇଁ ରାଜ୍ୟର ସଂରକ୍ଷିତ ଜଙ୍ଗଲ ଅଞ୍ଚଳକୁ ଉପଯୁକ୍ତ ଉପାୟରେ ବନ୍ୟାଜଳ ସଂରକ୍ଷଣ ପାଇଁ ବ୍ୟବହାର କରାଯିବା କଥା ଚିନ୍ତା କରାଯାଇପାରେ । ସେହିପରି ନଦୀ ଶଯ୍ୟା ଗୁଡ଼ିକରେ ଉପଲବ୍ଧ ସ୍ଥାନର ମଧ୍ୟ ବ୍ୟବହାର କରାଯାଇ ପାରେ । ଏଇ ସ୍ଥାନ ମାନଙ୍କରେ ବସତି ନାହିଁ । ବିଭିନ୍ନ କାରଣରୁ ମଣିଷକୁ ଉଚ୍ଛେଦ କରିବା ଅପେକ୍ଷା ଜଙ୍ଗଲର ବ୍ୟବହାରିତାରେ କୌଣସି ପ୍ରକାର ପରିବର୍ତ୍ତନକୁ ପରିବେଶର ସୁରକ୍ଷା ନାଁରେ ଅଧିକ ଗୁରୁତ୍ୱ ଦିଆଯାଉଛି । ଏହି ପରିବର୍ତ୍ତନ ସପକ୍ଷରେ ତଥା ବିପକ୍ଷରେ ବିତର୍କ ହେବା ଉଚିତ । ତାହାହେଲେ ବିକଳ୍ପ ବ୍ୟବସ୍ଥାର ଉଭୟ ଦିଗ କର୍ତ୍ତୃପକ୍ଷଙ୍କ ଚିନ୍ତାର ବିଷୟ ହୋଇଯିବ । ବାସ୍ତବ ପରିବର୍ତ୍ତନ ଏହାର ପରବର୍ତ୍ତୀ ପର୍ଯ୍ୟାୟର କାର୍ଯ୍ୟକ୍ରମ ହେବ ।

୨୧.୨. ମରୁଡି ପୀଡିତ ଅଞ୍ଚଳକୁ ବିଭିନ୍ନ ଉପାୟରେ ବିକଶିତ କରାଯାଇପାରିବ । ଉଦାହରଣ ସ୍ୱରୂପ ମାଟିର ପାଗକୁ ଓଦାଳିଆ ରଖିବା ବ୍ୟବସ୍ଥା କରାଯାଇପାରିବ, ଜଳ ଅମଳ ପ୍ରକ୍ରିୟାର ପ୍ରବର୍ତ୍ତନ କରାଯାଇପାରିବ, ବାଷ୍ପୀକରଣ ପ୍ରକ୍ରିୟାକୁ କମାଇ ଦେଇ ହେବ, ମାଟିତଳ ପାଣି ସ୍ତରକୁ ପୁନର୍ବାର ଚାର୍ଜ କରାଯାଇ ପାରିବ । ଏବଂ ବଳକା ଅଞ୍ଚଳର ମରୁଡି ଅଞ୍ଚଳକୁ ପାଣି ନେବାର ବ୍ୟବସ୍ଥା କରାଯାଇ ପାରିବ । ଏପରି କାର୍ଯ୍ୟକ୍ରମଦ୍ୱାରା ମରୁଡି ଜନିତ ସମସ୍ୟାଗୁଡିକର ଗୁରୁତ୍ୱ କମାଇ ଦିଆଯାଇପାରିବ । ତୃଣ ଜାତୀୟ ଜଙ୍ଗଲ କିମ୍ବା ଉନ୍ନୟନ ପ୍ରକ୍ରିୟାର ଅନ୍ୟାନ୍ୟ ଧାରାରେ, ଯେଉଁଥିରେ କମ୍ ପାଣିଖର୍ଚ୍ଚ ହେବ ସେହି କାର୍ଯ୍ୟକୁ ପ୍ରୋତ୍ସାହିତ କରାଯିବା ଦରକାର । ଏଥିପାଇଁ ଆବଶ୍ୟକ ଅର୍ଥର ପରିମାଣ, ପ୍ରଚଳିତ ଧାରାର ଜଳ ସମ୍ପଦ ପ୍ରକଳ୍ପ ପାଇଁ ଦିଆଯାଉଥିବା ଅର୍ଥର ପରିମାଣ ସହ ସମାନ ହେବା ଉଚିତ ।

ସ୍ପଷ୍ଟୀକରଣ :

ସେହିପରି ରଖାଯାଇପାରେ । କିନ୍ତୁ ଏହା କୁହାଯାଇପାରେ ଯେ ସେହିସବୁ ଉନ୍ନୟନ ପ୍ରକ୍ରିୟା ଅଳ୍ପ ବହୁତେ ଏବେ ମଧ୍ୟ ଚାଲିଛି ଏଥିପାଇଁ ବରାଦ ଅର୍ଥ ବହୁତ କମ୍ ଏବଂ ଏଗୁଡ଼ିକୁ ମୁଖ୍ୟକାର୍ଯ୍ୟ ବୋଲି ଧରାଯାଏ ନାହିଁ ଏଥିପାଇଁ ପ୍ରଥମେ ଚିନ୍ତାଧାରାରେ ପରିବର୍ତ୍ତନ ଆବଶ୍ୟକ । ତାପରେ ହିଁ ଆବଶ୍ୟକ ଅର୍ଥର ବରାଦ ହୋଇ ପାରିବ ।

୨୧.୩. ମରୁଡି ପୀଡିତ ଲୋକମାନଙ୍କୁ ରିଲିଫ୍ କାର୍ଯ୍ୟ ଜରିଆରେ କାମଧନ୍ଦା ଯୋଗାଇ ଦିଆଯାଇ ସେ ଅଞ୍ଚଳରେ ମରୁଡିର ପ୍ରତିରୋଧ କରାଯାଉ । ଏପରି ଲକ୍ଷ୍ୟ ରଖାଯାଇ, ଅନେକ ଗୁଡିଏ କ୍ଷୁଦ୍ର ପ୍ରକଳ୍ପ ବିଭିନ୍ନ ସ୍ଥାନରେ ହାତକୁ ନିଆଯିବା ଦରକାର । ଫଳରେ ଏହି ରିଲିଫ୍ କାର୍ଯ୍ୟର ଉପକାରିତା ଦ୍ୱାରା ସମାଜର ଏକ ବୃହତ୍ତର ଅଂଶ ଲାଭବାନ ହେବ ।

ସ୍ପଷ୍ଟୀକରଣ :

ମରୁଡ଼ି ନିରାକରଣ ପ୍ରକ୍ରିୟା ଗୁଡ଼ିକ ଛୋଟ ଛୋଟ ପ୍ରକଳ୍ପ ଭିତ୍ତିକ ହେଉ ଏବଂ ବହୁ ଅଞ୍ଚଳରେ ହେଉ । ଏହା ଫଳରେ ମଣିଷ ସମାଜର ଏକ ବୃହତ୍ ଅଂଶ ଲାଭବାନ୍ ହେବେ ।

୨୧.୪. କେନାଲର ଶେଷମୁଣ୍ଡ ଆଡକୁ ଥିବା ଜଳାଶୟ ଗୁଡିକୁ କେନାଲ ଦ୍ୱାରା ସଂଯୋଗ କରାଯାଇ, ମୌସୁମୀ ସମୟରେ ମିଳୁଥିବା ବଳକା ପାଣିକୁ ଏଥିରେ ରଖାଯିବା ପାଇଁ ଯୋଜନା କରାଯାଉ । ଯାହାଦ୍ୱାରା ପାଣିର ଅଭାବ ସମୟରେ ସେହି ଜଳାଶୟ ଗୁଡିକ ଜଳାଭାବକୁ ମେଣ୍ଟାଇ ପାରିବେ ।

**ସ୍ପଷ୍ଟୀକରଣ :**

ମରୁଡ଼ି ପୀଡିତ ଅଞ୍ଚଳରେ କରାଯାଉଥିବା ପ୍ରକଳ୍ପ ନିର୍ମାଣ କାର୍ଯ୍ୟରେ ବନ୍ଧ ତିଆରି କାମକୁ, କେନାଲ ଉନ୍ନୟନ କାର୍ଯ୍ୟର ଏକ ଅଂଶ ରୂପେ ରଖାଯାଉ । ଏହି ଜଳାଶୟ ଗୁଡ଼ିକ କେନାଲର ଶେଷ ମୁଣ୍ଡରେ କରାଯିବା ଦରକାର, ଯଦ୍ୱାରା ଅସମୟର ଜଳାଭାବକୁ ଏହା ମେଣ୍ଟାଇପାରିବ ।

**୨୨. ଜଳ ନିଷ୍କାସନ ପରିଚାଳନା :**

**୨୨.୧.** ନଦୀ ଅବବାହିକା ଅଞ୍ଚଳର ଯୋଜନା କଲାବେଳେ ପ୍ଲାବିତ ଅଞ୍ଚଳ ଓ ଅନ୍ୟ ଖାଲୁଆ ଅଞ୍ଚଳରେ ଜମି ରହୁଥିବା ପାଣିକୁ ନିଷ୍କାସନ କରିବା ଏକ ମୁଖ୍ୟ ସମସ୍ୟା ହୋଇଥାଏ । ସବୁବେଳେ ପାଣି ଜମି ରହିଲେ ତାହା ଶସ୍ୟ ଉତ୍ପାଦନକୁ କମାଇ ଦିଏ ଏବଂ ମାଟିରେ ଲୁଣିଆ ଅଂଶକୁ ବଢ଼ାଏ । ଏହାଦ୍ୱାରା ଜମି ଚାଷ ଅନୁପଯୋଗୀ ହୋଇଯାଏ । ସବୁବେଳେ ପାଣି ଜମି ରହିବା ଦ୍ୱାରା ପରିବେଶଗତ ଏବଂ ସ୍ୱାସ୍ଥ୍ୟଗତ ବିପଦ ମଧ୍ୟ ରହିଥାଏ । ତେଣୁ ଉପଯୁକ୍ତ ପ୍ରତିରୋଧ ଏବଂ ପ୍ରତିଷେଧମୂଳକ ପଦକ୍ଷେପ ନିଆଯିବା ଦରକାର । ପାଣି ବାଣ୍ଟିବା ପାଇଁ କାର୍ଯ୍ୟସୂଚୀ ତିଆରି କଲାବେଳେ ଜଳସେଚନ ବିରତି ପାଇଁ ବ୍ୟବସ୍ଥା ରହିବା ଦରକାର । କାରଣ ଏହା ଦ୍ୱାରା ମାଟିର ଆର୍ଦ୍ରତା ରକ୍ଷା ହେବା ସହିତ ଜମିର ଉତ୍ପାଦିକା କ୍ଷମତା ବୃଦ୍ଧି ହେବ ଏବଂ ଏହା ଏକ ପ୍ରମୁଖ ପ୍ରତିରୋଧାତ୍ମକ କୌଶଳ ହୋଇପାରିବ । ଜଳ ପରିବହନ ବ୍ୟବସ୍ଥାକୁ ଆଚ୍ଛାଦିତ କରିବା, ଚାଷକାର୍ଯ୍ୟ ପାଇଁ ଦିଆଯାଉଥିବା ପାଣି ପରିଚାଳନାରେ ଦକ୍ଷତା ବୃଦ୍ଧି କରିବା, ଭୂପୃଷ୍ଠସ୍ଥ ପାଣି ନିଷ୍କାସନ ବ୍ୟବସ୍ଥାର ଉପଯୁକ୍ତ ଦେଖାଶୁଣା କରିବା, ଭୂପୃଷ୍ଠର ନିଷ୍କାସିତ ଏବଂ ଭୂତଳ ପାଣିର ଏକତ୍ର ବ୍ୟବହାର କରିବା (ଏହା ନିଷ୍କାସନ ସମସ୍ୟାକୁ ବହୁମାତ୍ରାରେ କମାଇ ଦେଇପାରିବ) ହେଉଛି ମୁଖ୍ୟ ପ୍ରତିଷେଧକ ବ୍ୟବସ୍ଥା ।

ଜଳ ନିଷ୍କାସନର ଏକ ଯଥାର୍ଥ ମାଷ୍ଟର ପ୍ଲାନ୍ କରାଯାଇ ତହିଁରେ ଦୋଆବ୍ ଅଞ୍ଚଳରେ ଜମି ରହୁଥିବା ପ୍ରଚୁର ବନ୍ୟା ଜଳ ଏବଂ ତଳିଆ ଅଞ୍ଚଳ ତଥା ଜଳ ପ୍ଲାବିତ ଅଞ୍ଚଳରେ ଜମି ରହୁଥିବା ପାଣିର ନିଷ୍କାସନ ପାଇଁ ବ୍ୟବସ୍ଥା କରାଯିବା ଉଚିତ ।

**ସ୍ପଷ୍ଟୀକରଣ :**

ଜଳବଣ୍ଟନ ସୂଚୀ ତିଆରି କରିବା ହେଉଛି ଜଳମଗ୍ନତାକୁ ନିୟନ୍ତ୍ରଣ କରିବାର ଏକ ମୁଖ୍ୟ କୌଶଳ । ପାଣି ଯୋଗାଇ ଦେବାବେଳେ କେନାଲ ଆଦିରୁ କ୍ଷରିତ ପାଣି ମଧ୍ୟ ଜଳସେଚନର ଆଉ ଏକ କୌଶଳ; ଏହାକୁ ଜାଣିବାକୁ ହେବ ଏବଂ ହିସାବକୁ ନେବାକୁ ହେବ । ବର୍ତ୍ତମାନ ଏହାର ହିସାବ କରିବାର ବ୍ୟବସ୍ଥା ନାହିଁ । ନିୟନ୍ତ୍ରିତ ଭାବେ ପାଣି ଯୋଗାଇବା ଦ୍ୱାରା ଉଚ୍ଚ ଭୂମିରେ ମାଟିର ଆର୍ଦ୍ରତା ରକ୍ଷା କରିବା ହେଉଛି ତୃତୀୟ ବାଟ । ଏହି କୌଶଳଗୁଡ଼ିକ ଜଳ ସମ୍ପଦ ବିଭାଗ ଦ୍ୱାରା ଏ ପର୍ଯ୍ୟନ୍ତ ବ୍ୟବହାର ହୋଇନାହିଁ । ଜଳ ନୀତିରେ ଥିବା ପ୍ରସ୍ତାବଗୁଡ଼ିକୁ ଏହି ପରିପ୍ରେକ୍ଷୀରେ ସଂଶୋଧନ କରାଯିବା ଉଚିତ ।

**୨୩. ପ୍ରକଳ୍ପ ପର୍ଯ୍ୟବେକ୍ଷଣ:**

**୨୩.୧.** ଜଳ ସମ୍ପଦ ବିକାଶ ପ୍ରକଳ୍ପ ଗୁଡ଼ିକ କାର୍ଯ୍ୟକାରୀ କରାଯିବା ସମୟରେ ତାହାକୁ ପୁଙ୍ଖାନୁପୁଙ୍ଖ ଭାବେ ପର୍ଯ୍ୟବେକ୍ଷଣ କରାଯାଇ ସେଥିରେ ଥିବା ପ୍ରତିବନ୍ଧକ ଗୁଡ଼ିକୁ ଚିହ୍ନଟ କରାଯିବା ଉଚିତ । ଏହାଦ୍ୱାରା ସମୟାନୁସାରେ ବିହିତ ପଦକ୍ଷେପ ନିଆଯାଇପାରିବ ଏବଂ ଅନେକ ଆର୍ଥିକ କ୍ଷତି ଏବଂ ସମୟ-ବ୍ୟୟକୁ ଦୂର କରିହେବ ।

**୨୩.୨.** ପ୍ରକଳ୍ପକୁ ପର୍ଯ୍ୟବେକ୍ଷଣ କରିବା, ତା'ର କାର୍ଯ୍ୟଗୁଡ଼ିକୁ ମୂଲ୍ୟାଙ୍କନ କରିବା, ଏବଂ ଏହାର ଆର୍ଥିକ ଓ ସାମାଜିକ ପ୍ରଭାବ ଭବିଷ୍ୟତର ପ୍ରକଳ୍ପ ତିଆରି ପାଇଁ କି ପ୍ରକାର ଖୋରାକ ଯୋଗାଇବ ତା'ର ଏକ ବ୍ୟବସ୍ଥାକ୍ରମ ରହିବା ଉଚିତ ।

## ୨୪. କାର୍ଯ୍ୟ-ସମ୍ପାଦନାର ଉତ୍କର୍ଷ :

୨୪.୧. ଜଳ ସମ୍ପଳ ବିଭାଗର ପରିଚାଳନା ପାଇଁ ଦିଆଯାଉଥିବା ଗୁରୁତ୍ୱକୁ ପରିବର୍ତ୍ତନ କରାଯିବାର ଏକ ଜରୁରୀ ଆବଶ୍ୟକତା ରହିଛି । ବର୍ତ୍ତମାନ ଜଳ ସମ୍ପଳ ସଂରଚନାଗୁଡିକର ବହୁବିଧ ବ୍ୟବହାର ପାଇଁ ସେଗୁଡିକର ନୂତନ ନିର୍ମାଣ ଓ ସଂପ୍ରସାରଣ ଉପରେ ଦିଆଯାଉଥିବା ଗୁରୁତ୍ୱକୁ ଆଗରୁ ରହିଥିବା ଜଳ ସମ୍ପଳ ସୁବିଧା ସୁଯୋଗଗୁଡିକର କାର୍ଯ୍ୟଦକ୍ଷତା ବୃଦ୍ଧି ନିମନ୍ତେ ପରିବର୍ତ୍ତନ କରାଯାଉ । ଜଳ ସମ୍ପଳ ବିଭାଗର ଅଧୀନରେ ଥିବା କ୍ଷେତ୍ରଗୁଡିକ ପାଇଁ ଅର୍ଥ ଆବଣ୍ଟନ କଲାବେଳେ ପ୍ରକଳ୍ପର କେତେକ କ୍ଷେତ୍ରର ବିକାଶ ପାଇଁ (ଉପକରଣ ଗୁଡିକର ବିକାଶ ସହିତ ସେଗୁଡିକୁ ଚଳାଇବା ଏବଂ ରକ୍ଷଣାବେକ୍ଷଣ ପାଇଁ ଲୋଡା ଆବଶ୍ୟକ ଆନୁଷଙ୍ଗିକତା ଗୁଡିକୁ ପୂରଣ କରାଯାଇପାରିବ) ଅଧିକ ଗୁରୁତ୍ୱ ଦିଆଯିବା ଉଚିତ । ଯାହାଦ୍ୱାରା ଏହାକୁ ଅଧିକ ପରିବର୍ତ୍ତନକ୍ଷମ କରାଯାଇପାରିବ ଏବଂ ଉନ୍ନତମାନର କୃଷିଭିତ୍ତିକ ଜ୍ଞାନକୌଶଳଗୁଡିକର ବ୍ୟବହାର ଲାଗି ସୁବିଧା ସୃଷ୍ଟି କରିବା ସହିତ ଅଧିକ ଉତ୍ପାଦନକ୍ଷମ କରିପାରିବ ।

ସ୍ପଷ୍ଟୀକରଣ :

କାର୍ଯ୍ୟ ସମ୍ପାଦନା କରୁଥିବା କ୍ଷେତ୍ରଗୁଡିକ ପାଇଁ ଅତିରିକ୍ତ ଅର୍ଥ ଯୋଗାଡ କରିବା ସକାଶେ ଜଳ ସମ୍ପଦ ବିଭାଗ ଏହାର ଯାନ୍ତ୍ରିକ କଳକୌଶଳକୁ ସଂଲଗ୍ନ ଅନ୍ୟ କ୍ଷେତ୍ର ଯଥା କୃଷିକ୍ଷେତ୍ରର ଯାନ୍ତ୍ରିକ କୌଶଳ ଗୁଡିକ ସହିତ ତାଳ ଦେଇ କେବଳ ଉନ୍ନତି ହାସଲ କରିବା ଲକ୍ଷ୍ୟ ନ ରଖି ବରଂ କୃଷି ବିଭାଗ ତଥା କୃଷକମାନଙ୍କ ମଧ୍ୟରେ ଏକ ପାରସ୍ପରିକ ବୁଝାମଣା ପାଇଁ କ୍ଷେତ୍ର ପ୍ରସ୍ତୁତ ମଧ କରାଯାଉ । କିନ୍ତୁ ରାଜ୍ୟ ଜଳ ନୀତିର ଏହି ବିବୃତିଟିର ନିହିତାର୍ଥ କେବଳ ଅତିରିକ୍ତ ଅର୍ଥ ବରାଦ କରିବା ପାଇଁ ହୋଇଥିବାର ମନେ ହୁଏ ।

## ୨୫. ରକ୍ଷଣାବେକ୍ଷଣ ଏବଂ ଆଧୁନିକୀକରଣ :

୨୫.୧. ଯଥେଷ୍ଟ ଅର୍ଥ ବିନିଯୋଗ କରାଯାଇ ଜଳ ସମ୍ପଦ ବିଭାଗ ଦ୍ୱାରା ନିର୍ମିତ ପଦାର୍ଥ (କୋଠାବାଡି ଆଦି) ଏବଂ କାର୍ଯ୍ୟ ଶୃଙ୍ଖଳାର ଯଥାର୍ଥ ରକ୍ଷଣାବେକ୍ଷଣ କରିବା ସହିତ ସେଗୁଡିକର ଅକ୍ଷତ ଅବସ୍ଥା ବଜାୟ ରଖାଯାଉ । ଏଥିପାଇଁ କେବଳ ଯେ ବଜେଟରେ ଆବଶ୍ୟକ ଅର୍ଥ ବରାଦ କରିଦେଲେ ଚଳିଯିବ ତା' ନୁହେଁ । ନୂଆ ପ୍ରକଳ୍ପ ଗୁଡିଏ ତିଆରି କଲାବେଳେ ପୂର୍ବ ପ୍ରକଳ୍ପ ଗୁଡିକରେ ଥିବା ତ୍ରୁଟିଗୁଡିକୁ ଚିହ୍ନିତ କରାଯାଇ ସେଥିରେ ଥିବା କାରଣଗୁଡିକୁ ଦୂର କରି ଦେବାକୁ ହେବ (ବଜେଟ୍‌ରେ ଏଥିପାଇଁ ବାର୍ଷିକ ବ୍ୟବସ୍ଥା ରହିବା ଉଚିତ) ।

ସ୍ପଷ୍ଟୀକରଣ :

କୃଷକମାନେ ଆବଶ୍ୟକମତେ ପାଣି ପାଉନଥିବାରୁ କେନାଲମାନଙ୍କରେ ଅବସ୍ଥିତ ଜଳବାହୀ ଗୁଡ଼ିକର କ୍ଷତି ଘଟାଇଥାନ୍ତି । ତେଣୁ ଏହି ଶୃଙ୍ଖଳାର ପୂର୍ବାବସ୍ଥାକୁ ବଜାୟ ରଖିବା ବା ପୁନରୁଦ୍ଧାର ପାଇଁ ଅର୍ଥ କେବଳ ଏକମାତ୍ର ସମାଧାନର ବାଟ ନୁହେଁ । ତେଣୁ ଭାଙ୍ଗିଯାଇଥିବା ଜଳବାହୀ (ସୋଠ ଆଦିର) ଗୁଡିକର ପୁନରୁଦ୍ଧାର ପାଇଁ ଅର୍ଥ ଖର୍ଚ୍ଚ କରିବା ପୂର୍ବରୁ ଚାଷୀର ଅସୁବିଧାର କାରଣ ଗୁଡିକର ପ୍ରତିକାର କରାଯାଉ । କିନ୍ତୁ ତାହା ଯଦି ନହୁଏ ଏହିପରି ଭଙ୍ଗାରୁଜା କାମ ବାରମ୍ବାର ହେଉଥିବ ଏବଂ ତାକୁ ପ୍ରତିରୋଧ କରିହେବ ନାହିଁ ।

୨୫.୨. ଏଥିପାଇଁ ଏହି ଜଳବାହୀ ଗୁଡିକର ପରିଚାଳନା ପାଇଁ ଏକ ସୁବିବେଚିତ ବ୍ୟବସ୍ଥା ପ୍ରଚଳନ କରାଯାଉ ।

୨୫.୩. ନିର୍ମିତ ଜଳବାହୀ ଗୁଡିକର ଏବଂ କାର୍ଯ୍ୟ ପଦ୍ଧତିର ଏକ ନିୟମିତ ପର୍ଯ୍ୟବେକ୍ଷଣ କରାଯାଉ ଏବଂ ଆବଶ୍ୟକ ଥଇଥାନ ଏବଂ ଆଧୁନିକୀକରଣ କାର୍ଯ୍ୟକ୍ରମ ଗୁଡିକୁ ଗ୍ରହଣ କରାଯାଉ ।

୨୫.୪. ପାଣି ବ୍ୟବହାରକାରୀଙ୍କର ସଂଗଠନ (ପାଣି ପଞ୍ଚାୟତ) ଗଢ଼ାଯାଇ ସେମାନଙ୍କ ମଧ୍ୟରେ ଦାୟିତ୍ୱ ସମ୍ଭାଳିବା ଏବଂ ପ୍ରଶାସନିକ ଗୁଣକୁ ପ୍ରୋତ୍ସାହିତ କରାଯାଉ । ଫଳରେ ସେମାନେ ଜଳସେଚନ ପରିଚାଳନା ସହିତ ନିୟମିତ ରକ୍ଷଣାବେକ୍ଷଣ କାର୍ଯ୍ୟକୁ ସହଜରେ କରିପାରିବେ ।

## ୨୬. ବନ୍ଧର ସୁରକ୍ଷା :

୨୬.୧. ଜଳ ଭଣ୍ଡାର ଚାରିପାଖେ ଥିବା ବନ୍ଧ ଗୁଡ଼ିକର ନିରାପତ୍ତାକୁ ସୁରକ୍ଷିତ କରିବା ପାଇଁ ଏବଂ ଅନ୍ୟାନ୍ୟ ପାଣି ସମ୍ପର୍କିତ ଢାଞ୍ଚାଗୁଡ଼ିକ ଯଥା ଅନୁସନ୍ଧାନ, ରୂପାୟନ, ଗଠନ, ଜଳତତ୍ତ୍ୱ ଏବଂ ଭୂତତ୍ତ୍ୱ ଆଦି କ୍ଷେତ୍ରରେ ବିଶେଷ ଦକ୍ଷତା ଅର୍ଜନ କରିଥିବା ବ୍ୟକ୍ତିମାନଙ୍କୁ ନିଆଯାଇ ରାଜ୍ୟସ୍ତରୀୟ ଏକ ଉପଯୁକ୍ତ ସାଙ୍ଗଠନିକ ବ୍ୟବସ୍ଥା କରାଯାଉ । ବନ୍ଧ ନିରାପତ୍ତା ଆଇନ କାର୍ଯ୍ୟକାରୀ କରାଯାଇ ପୂର୍ବରୁ ରହିଥିବା ବନ୍ଧଗୁଡ଼ିକର ଯଥାର୍ଥ ପରିଦର୍ଶନ କରିବା ସହ ତା'ର ସ୍ଥାୟୀତ୍ୱ ଲାଗି ତୀକ୍ଷ୍ଣ ଦୃଷ୍ଟି ରଖାଯାଉ, ଏବଂ ଆବଶ୍ୟକ ପଡ଼ିଲେ ସେସବୁର ଯଥାର୍ଥ ରକ୍ଷଣାବେକ୍ଷଣ ଏବଂ ଥଇଥାନ କରାଯାଉ ।

## ୨୭. ତାଲିମ୍ ଏବଂ ସଚେତନତା ସୃଷ୍ଟିକାରୀ କାର୍ଯ୍ୟକ୍ରମ :

୨୭.୧. ଉତ୍ତମମାନର ତାଲିମ୍ ଦେବା ପାଇଁ ଏକ ଆଖିଦୃଶିଆ ଯୋଜନା କରିବା ହେଉଛି ପୂର୍ଣ୍ଣାଙ୍ଗ ଜଳ ସମ୍ବଳ ବିକାଶ କାର୍ଯ୍ୟକ୍ରମର ଏକ ଅଂଶ । ଏଥିରେ ତଥ୍ୟ ଯୋଗାଇ ଦେବାର ବ୍ୟବସ୍ଥା, ବିଭାଗୀୟ ଯୋଜନା କରିବା, ପ୍ରକଳ୍ପ ଲାଗି ଯୋଜନା କରିବା ଏବଂ ତା'ର ରୂପରେଖ ନିର୍ଣ୍ଣୟ କରିବା, ପ୍ରକଳ୍ପର ପରିଚାଳନା ଓ କାର୍ଯ୍ୟକାରୀତା ଏବଂ ସେମାନଙ୍କର ବାହ୍ୟିକ ସଂଗଠନ ଏବଂ ପାଣି ଯୋଗାଇବା ବ୍ୟବସ୍ଥାର ପରିଚାଳନା ଆଦି କାର୍ଯ୍ୟ ଏହି ତାଲିମ୍‌ର ଅନ୍ତର୍ଭୁକ୍ତ ହେବା ଦରକାର । ବିଭିନ୍ନ ବିଭାଗ ପାଇଁ ତାଲିମ୍‌ର ଆବଶ୍ୟକତାଗୁଡ଼ିକୁ ଚିହ୍ନିତ କରାଯାଉ ଏବଂ ପ୍ରୟୋଜନୀୟତା ଭିତ୍ତିରେ ତାଲିମ୍ ଯୋଗାଇ ଦିଆଯାଉ । ସ୍ତ୍ରୀଲୋକମାନେ ଯେହେତୁ କୃଷି ଉନ୍ନୟନମୂଳକ କାର୍ଯ୍ୟରେ ନିଷ୍ପତ୍ତି ନେବା କ୍ଷେତ୍ରରେ ଭାଗ ନେଇଥାନ୍ତି, ତେଣୁ ଯଥାର୍ଥ ତାଲିମ୍ ଦ୍ୱାରା ସେମାନଙ୍କ ଭିତରେ ପାଣିର ବ୍ୟବହାର ଓ ପରିଚାଳନା ଲାଗି ସଚେତନତା ସୃଷ୍ଟି କରାଯିବା ଦରକାର । ଜଳନୀତି ଉପରେ ବିଭିନ୍ନ ଗଣମାଧ୍ୟମର ପ୍ରତିନିଧିମାନଙ୍କର ଗୋଚର ନିମନ୍ତେ ମଧ୍ୟ ତାଲିମ୍ କାର୍ଯ୍ୟକ୍ରମ କରାଯିବା ଦରକାର । ଏହି ତାଲିମ୍ କାର୍ଯ୍ୟକ୍ରମକୁ ମଧ୍ୟ ସବୁ ପ୍ରକାରର ପ୍ରତିନିଧିଙ୍କୁ ଯେଉଁମାନେ ଏହିଭଳି କାର୍ଯ୍ୟକ୍ରମରେ ସଂଶ୍ଲିଷ୍ଟ ଏପରିକି କୃଷକମାନଙ୍କୁ ମଧ୍ୟ ଦିଆଯିବା ଦରକାର । ପାଣିର ସଂରକ୍ଷଣ ଏବଂ ପାଣି ସମ୍ପଦର ପରିଚାଳନା, ଜମିର ସଠିକ୍ ବ୍ୟବହାର କରି ତା'ର ଅବମୂଲ୍ୟାୟନକୁ ରୋକିବା ଏବଂ ସାର, ଔଷଧର ଯଥାଯଥ ବ୍ୟବହାର କରିବା ଆଦି ଦିଗଗୁଡ଼ିକ ବିଷୟରେ ଲୋକ ମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରାଯିବା ଆବଶ୍ୟକ ।

### ସ୍ପଷ୍ଟୀକରଣ :

ଜଳନୀତିର ଏହି ନିୟମଟି ତାଲିମ୍‌ର ଲକ୍ଷ୍ୟ ବିଷୟରେ ନୀରବ ରହିଛି । ଫଳରେ ସମସ୍ତ ପ୍ରକାରର ତାଲିମ୍ ଅନେକ ବହୁତେ ଦେଖାଣିଆ ହୋଇଯାଇଛି । ଯାହାପଛରେ କୌଣସି ଗୁରୁତ୍ୱ ନାହିଁ ଏବଂ ସତେଯେପରି ପଚାଶ ବର୍ଷ ପୂର୍ବେ ତିଆରି ହୋଇଥିବା ପରି ବୋଧ ହେଉଛି ।

୨୭.୨. ପାଣି ଯେ ଏକ ଦୁର୍ଲଭ ସମ୍ପଦ, ଏହି ଭାବନାକୁ ମନରେ ପୋଷଣ କରିବା ଉଚିତ । ଶିକ୍ଷା, ନିୟମ, ପ୍ରୋତ୍ସାହନ ଆଦି ମାଧ୍ୟମରେ ଜଳ ସଂରକ୍ଷଣ ପାଇଁ ସଚେତନତା ସୃଷ୍ଟି କରାଯିବା ଉଚିତ ।

# ଓଡ଼ିଶା



ମଧ୍ୟ ପ୍ରଦେଶ
ପଶ୍ଚିମବଙ୍ଗ
ସୁନ୍ଦରଗଡ଼
ମୟୂରଭଞ୍ଜ
ଝାରସୁଗୁଡ଼ା
ସମ୍ବଲପୁର
ଦେବଗଡ଼
କେଉଁଝର
ବରଗଡ଼
ବାଲେଶ୍ୱର
ସୋନପୁର
ଅନୁଗୁଳ
ନୂଆପଡ଼ା
ବଲାଙ୍ଗୀର
ବୌଦ୍ଧ
ଭଦ୍ରକ
ଢେଙ୍କାନାଳ
ଯାଜପୁର
କଟକ
କେନ୍ଦ୍ରାପଡ଼ା
ନବରଙ୍ଗପୁର
କନ୍ଧମାଳ
ନୟାଗଡ଼
କଳାହାଣ୍ଡି
ଭୁବନେଶ୍ୱର
ଜଗତ୍‌ସିଂହପୁର
ପୁରୀ
ରାୟଗଡ଼ା
ଗଞ୍ଜାମ
ଗଜପତି
କୋରାପୁଟ
ବଙ୍ଗୋପ ସାଗର
ମାଲ୍‌କାନ୍‌ଗିରି
ଆନ୍ଧ୍ର ପ୍ରଦେଶ